ପ୍ରଥମ ପ୍ରକାଶ, ଜାନୁୟାରୀ ୧୯୭୮
ଦ୍ୱିତୀୟ ମୁଦ୍ରଣ, ଜାନୁୟାରୀ ୧୯୯୨

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ବେଦେଶ୍ୱ ପ୍ରିଣ୍ଟର୍ସ
ବାଖରାବାଦ, କଟକ ୭୫୩୦୦୨

ମୂଲ୍ୟ—ଟ ୯.୦୦

| ବିଷୟ | | ପୃଷ୍ଠା |
| --- | --- | --- |
|  |

# ବଡ଼ ବୋକା କଥା

ଦୁଇଟି ବନ୍ଧୁ ସାଙ୍ଗ ହୋଇ ଗୋଟିଏ ଗଳି ଭିତରେ ଯାଉଥିଲେ । ବୁଢ଼ୀଟିଏ ତାଙ୍କ ଆଡ଼କୁ ଆସୁଥିଲି । ସେ ତାଙ୍କ ଦୁହିଁଙ୍କୁ ଦେଖି "ସଲାମ୍" ବୋଲି କହି ତା ବାଟରେ ଗ୍ଲଲିଗଲି । ସେ ଯିବାପରେ ଦୁଇ ବନ୍ଧୁଙ୍କ ଭିତରେ ଲାଗିଲି କଳି ଯେ ବୁଢ଼ୀ କାହାକୁ ସଲାମ୍ କଲି । ସେ ଦୁହେଁ ନିଜ ଭିତରେ ଏହା ତୁଟାଇ ପାରିଲେ ନାହିଁ । ଠିକ୍ କଲେ ବୁଢ଼ୀକୁ ଏ କଥାଟା ଯାଇ ପଗ୍ଲରିବେ । ତେଣୁ ସେମାନେ ଧାଇଁଯାଇ ବୁଢ଼ୀକୁ ଡାକଲେ, "ଏ ମାଉସୀ, ମାଉସୀ ! ଟିକେ ରହ, ରହ । ଗୋଟାଏ କଥା ଶୁଣିଯା, ଆମର ଗୋଟାଏ ସନ୍ଦେହ ତୁଟେଇ ଦେଇ ଯା ।" ବୁଢ଼ୀ ରହିଲି । ଘଟଣା କ'ଣ ବୋଲି ପଗ୍ଲରିଲି । ଦୁଇ ବନ୍ଧୁ କହିଲେ, "ସତ କହିଲୁ ମାଉସୀ, ତୁ କାହାକୁ ସଲାମ୍ କଲୁ ?" ବୁଢ଼ୀ ଟିକେ ଥମିଯାଇ କହିଲି, "ତୁମ ଦୁହିଁଙ୍କ ମଧ୍ୟରୁ ଯେ ବଡ଼ ବୋକା, ତାକୁ ମୁଁ ସଲାମ୍ କଲି ।" ଦୁହେଁଯାକ ବୋକାମିରେ ଓ ହୁଣ୍ଡାମିରେ ପରସ୍ପରଠାରୁ ବଡ଼ ବୋଲି ଦାବୀ କରିବାକୁ ଲାଗିଲେ । ବୁଢ଼ୀ କହିଲି, "ତୁମର ଏ ତୁଚ୍ଛା କଥାରେ, ମୁଁ କିଛି ତୁଟାଇ ପାରିବି ନାହିଁ । ତୁମେ ଆଗ ତୁମ ନିଜ ନିଜ ବୋକାମିର କଥା କହ । ମୁଁ ଶୁଣି ସାରିଲାପରେ ଯାହା କହିବି ।"

ଜଣେ ସାଙ୍ଗ ତା'ର ବୋକାମି କଥା କହିବାକୁ ଆରମ୍ଭ କଲି ।

କହିଲା, "ନସୀବ ଖରାବ । ମୁଁ ସକାଳେ ମୋ ବଗିଚାଆଡ଼େ ବୁଲି ଯାଇଥିଲି । ବୁଲି ବୁଲି ହାଲିଆ ଲାଗିଲାରୁ, ଖରା ବେଶୀ କାଟିବାରୁ ମୁଁ କୂଅ ବେଢ଼ରେ ଟିକିଏ ଗଡ଼ପଡ଼ ହେଲି । ସେଇଲାଗେ ନିଘୋଡ଼ ନିଦ ହୋଇଗଲା । ଯେତେବେଳେ ନିଦ ଭାଙ୍ଗିଲା, ଦେଖିଲି ମୋ ପଗଡ଼ି କୂଅରେ ଖସି ପଡ଼ୁଛି । ଯୋଡ଼ା ହଳକ କୁକୁର କମ୍ବା ଟ୍ରେର ନେଇଯାଉଛି । ମୁଁ ବଡ଼ ଅଡୁଆରେ ପଡ଼ିଲି । କପଣ ଘରକୁ ଫିଦ୍ଧ କଛି ଭାବ ପାରିଲି ନାହିଁ । ଯାହାହେଉ ମନକୁ ଖୁବ୍ ଟାଣ କରି ଖାଲି ପାଦରେ ଓ ମୁଣ୍ଡରେ ହାତ ଦେଇ ଘରକୁ ଆସିଲି । ମୁଁ



ଏପରି ଧାଇଁ ଆସୁଥିବାବେଳେ ମୋର ଏକ ଚୁକରାଣୀ ମୋତେ ଦେଖିଲା । ସେ କାନ୍ଦ କାନ୍ଦ ଆମ ଘରକୁ ଧାଇଁଗଲା । ସାଆନ୍ତାଣୀକୁ ତା'ର କହିଲା, "ଓ ବେଗମ୍, ଆମକୁ କେଉଁ ବିପଦ ଘୋଟିଛି କେଜାଣି ! ହେଇ ଦେଖ, ମିଆଁ ସାହେବ ଖାଲି ପାଦରେ ମୁଣ୍ଡରେ

ହାତଦେଇ ଧାଇଁ ଧାଇଁ ଆସୁଛନ୍ତି । ମୁଁ ଘରେ ପହଞ୍ଚିଲାବେଳକୁ ସମସ୍ତେ ହାଉଳି ହୋଇ ଉଚ୍ଚ କରି କାନ୍ଦୁଛନ୍ତି । ବାଡ଼େଇ କଚାଡ଼ି ହେଉଛନ୍ତି । ମୁଁ ଜାଣେନାହିଁ ଯେ ମୁଁ ସେମାନଙ୍କ କାନ୍ଦଣାର ମୂଳ । ଘରେ କି ବିପଦ ପଡ଼ିଛି କି ଅନିଷ୍ଟ ଆସି ପହଞ୍ଚିଛି ଯେ ସମସ୍ତେ କାନ୍ଦୁଛନ୍ତି, ଏହା କାହାକୁ ନ ପଚାରି ମୁଁ କାନ୍ଦିବାକୁ ଲାଗିଲି ବଡ଼ ବିକଳ ହୋଇ । ଆମ କାନ୍ଦଣା ଶୁଣି, ଆମକୁ ବିକଳ ପାଇ ସାଇ-ପଡ଼ଶାଲୋକେ ବି ଆମ ସଙ୍ଗେ କାନ୍ଦିଲେ । ଆମେ ଘଣ୍ଟାଏ ବା ତହିଁରୁ ଅଧିକ ସମୟ କାନ୍ଦିବା ପରେ ଗ୍ରାମବାସୀଏ ଆସି ମୋତେ ପଚାରିଲେ, "ଆପଣଙ୍କର କିଏ ମଲା କି ?" ମୁଁ କହିଲି, "ମୁଁ ଜାଣେ ନାହିଁ । ଘରଆଡ଼େ ପଚାରନ୍ତୁ ।" "କାହିଁକି କାନ୍ଦୁଛ" ଘରେ ଯାହାକୁ ପଚାରିଲେ, କେହି କିଛି ଏହାର କାରଣ କହି-ପାରିଲେ ନାହିଁ । ଶେଷରେ ମୋ ସ୍ତ୍ରୀକରାଣୀ କହିଲା, "ଆଜ୍ଞା, ଆପଣ ଅଘଟଣିଆ ବେଶରେ ଘରକୁ ଦୌଡ଼ି ଦୌଡ଼ି ଆସୁଥିବାର ଦେଖି ଆମେ କାନ୍ଦୁଥିଲୁ ।" ମୋର ଘଟଣା କ'ଣ ସତେ ଜାଣିବାକୁ ପୁଚ୍ଛିବାରୁ ମୁଁ ସବୁକଥା କହିଲି । ମୋ କଥା ଶୁଣି ସମସ୍ତେ ଠୋ ଠୋ ହସିଲେ । କହିଲେ, "ତୁମେ ଦୁନିଆରେ ସବୁଠାରୁ ବଡ଼ ବୋକା ।"

ଅନ୍ୟ ବନ୍ଧୁଟି ତା କଥା କହିବାକୁ ଲାଗିଲା । ମୋ ବାହାଘରର କିଛିଦିନ ପରେ, ମୋ ଶ୍ୱଶୁରଘରୁ ପୁନେଇଁଖିଆକୁ ଡାକରା ଆସିଲା । ମୋ ସାଥୀମାନେ ମୋତେ ଶିଖାଇଲେ, "ସାବଧାନ, ଶ୍ୱଶୁରଘରେ ହୁସିଆରରେ ଚଳିବୁ । ସେଠି ବେଶି ଖିଆପିଆ କରିବା ଭଲ ନୁହେଁ । ଜୋଇଁପୁଅ ଭୋକ ଆତୁରିଆ ବୋଲି ଜଣାଇବା ଆଦୌ ଠିକ୍ ନୁହେଁ । ତେଣୁ ବୁଝିସୁଝି ଖିଆପିଆ କରିବୁ ।" ମୁଁ ମଧ୍ୟ ସେମାନଙ୍କ ଉପଦେଶରେ ଚଳିବାକୁ ମନେ ମନେ ପଣ କରି

ଶ୍ୱଶୁର ଘରକୁ ଗଲି । ମୋ ଖାଇବା ପାଇଁ ବହୁରକମ ଭଲ ଖାଦ୍ୟ ତିଆରି ହୋଇଛି । ସେସବୁ ବାଢ଼ି ମୋତେ ଖାଇବାକୁ ଡାକଲେ । ତାକୁ ଦେଖି ମୋ ପାଟିରୁ ଲାଳ ବୋହି ପଡ଼ୁଥାଏ । କିନ୍ତୁ ମୋ ଟାଣପଣ ରଖିବାକୁ ମୁଁ ସେଥିରୁ ଟିକିଏ ହେଲେ ଖାଇଲି ନାହିଁ । ଶାଶୁ ମୋର ବାଧ କରିବାରୁ, ତାଙ୍କୁ କ୍ଷମା ମାଗି କହିଲି, "ମୋର ପେଟ ବିଗିଡ଼ିଛି । ଭୋକ ବି ନାହିଁ । ମୋଟେ କିଛି ଖାଇ ପାରିବି ନାହିଁ । ଦୟାକରି ମାଫ୍ କରନ୍ତୁ ।"

ଦିନସାରା ଉପବାସ ରହିଗଲି । ରାତି ଅଧକୁ ଏମିତି ଭୋକ ହେଲା ଯେ ଭୋକ ସମ୍ଭାଳିବା ମୋ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । କାଳେ କ'ଣ ଖାଇବାକୁ ମିଳିଯିବ ବୋଲି ରୋଷେଇ ଘରକୁ ଗଲି । ଏଠିସେଠି କେତେ ଦରାଣ୍ଡିଲି, ଶେଷରେ ଗୋଟିଏ କୋଣରୁ କିଛି ଅଣ୍ଡା ପାଇଲି । ହାତରେ ଯେତେ ଧରିଲା, ଧରି ଶୋଇବାଘରକୁ ଗ୍ଲଲି । ତରତର ହୋଇ ଯାଉଥିଲି । ଦୁର୍ଭାଗ୍ୟ ଏମିତି ଯେ ଶୋଇବା ଘର ମେଜଟାକୁ ଝୁଣ୍ଟି ପଡ଼ିଲି, ତାହା ଓଲଟି ପଡ଼ିଲା । ହଠାତ୍ ରାତି ଯୋଗୁଁ ଶବ୍ଦଟା ଖୁବ୍ ଜୋର୍ ହେଲା । ସେ ଶବ୍ଦରେ ଘରର ସମସ୍ତେ ଉଠି ପଡ଼ିଲେ । ଘଟଣା କ'ଣ ଦେଖିବାକୁ ସମସ୍ତେ ଦଉଡ଼ି ଆଇଲେ । ସେମାନଙ୍କ ଆସିବା ଜାଣି ମୁଁ ତରବରରେ ଘରକୁ ପଶିଗଲି । ମୁଁ ମୋ ବିଛଣାରେ ଶୋଇପଡ଼ିଲି । କିନ୍ତୁ ଅଣ୍ଡାଗୁଡ଼ା ଲୁଚାଇବାକୁ ବେଳ ପାଇଲି ନାହିଁ କି ଜାଗା ବି ପାଇଲି ନାହିଁ । କାଳେ ଧରା ପଡ଼ିଯିବି, ଡରରେ ଅଣ୍ଡାତକ ପାଟିରେ ପୁରାଇ ଦେଲି । ବିଶ୍ୱାସ କର, ମୋ ମୁହଁ ଫୁଲି ତରଭୁଜ ପରି ହୋଇଗଲା । ମୁଁ ପ୍ରାୟ ଦରମରା ହୋଇଗଲି ।

ବଂଶଯାକ ମୋ ଘରକୁ ପଶି ଆସିଲେ । ଦେଖିଲେ ମୋ ମୁହଁ କେଉଁ ତାଳରେ ଫୁଲି ଯାଇଛି । ଫୁଲିର କାରଣ ମୋତେ

ପଚାରିଲେ । ମୁଁ ଉତ୍ତର ଦେବ ବା କ'ଣ ? ଭୟରେ ପାଟିକୁ ଅଧିକ ବନ୍ଦ କରି ରଖିଲି । କଥା କହିଲେ କାଳେ ସେମାନେ ମୋ ପାଟିରେ ଅଣ୍ଡା ଦେଖିପାରିବେ, ମୋର ଏଇ ଭୟ । ତାଙ୍କ କଥାର ଉତ୍ତର କିମ୍ବା ମୋର ଏ ଅବସ୍ଥାର କାରଣ କିଛି ମୋ'ଠାରୁ ପାଇଲେ ନାହିଁ । ମୋ ଶାଶୁ ଓ ଅନ୍ୟମାନେ ବାହୁନେଇ କାନ୍ଦିବାକୁ ଲାଗିଲେ, "ଆରେ ମୋର ଗଣ୍ଠି ଧନ, ନ ଖାଇ ନ ପିଇ ଏଇ ଦଶା ହେଲୁ, ମୋ ଧନ । ପେଟରେ ପେଟ ଗରମ, ମଥା ନରମ ହୋଇ ମୁହଁ ତ ଏଡ଼େ ହୋଇଛି, ମୋ ଧନ । ବେଗେ ଯାଇ ବଇଦ ଡାକି ଆଣରେ···ମୋ ଧନ" ଇତ୍ୟାଦି ।

ସଙ୍ଗେ ସଙ୍ଗେ ଡାକ୍ତର ଡକା ହେଲା । ଡାକ୍ତର ମୋତେ ନୀରବ, ଅଣନିଃଶ୍ୱାସୀ ଓ ଆଖି ଖୋଷି ହୋଇ ରହିଥିବାର ଦେଖିଲେ । କହିଲେ, "ଅହଃ, ଅତି ଗୁରୁତର ବେମାର । ଅତିଶୀଘ୍ର ଅସ୍ତ୍ର-ଚିକିତ୍ସା ନ କଲେ ରୋଗୀକୁ ବଞ୍ଚାଇବା ଭାରି ମୁସ୍କିଲ ହେବ । ତୁରନ୍ତ ଅସ୍ତ୍ରଚିକିତ୍ସା କରିବାକୁ ସମସ୍ତେ ରାଜି ହେଲେ । ଡାକ୍ତର ଗୋଟିଏ ଧାରୁଆ ଛୁରୀରେ ମୋ ଡାହାଣ ଗାଲରେ ଗୋଟେ କଣା କରିଦେଲେ । ପାଟିରେ ଥିବା ଅଣ୍ଡାରୁ ଧଳା ଓ ହଳଦିଆ ଜଳ ବୋହି ଆସିଲା । ଡାକ୍ତର ବଡ଼ିମା କରି କହିଲେ, "ହେଇ ଦେଖ, କେତେ ମଇଳା ଜମିଥିଲା ।" ତା'ପରେ ଆର ଗାଲ କାଟିବାକୁ ଲାଗିଲେ । ଛୁରୀଟା ବାଜି ଏକାବେଳେ ଦୁଇଟା ଅଣ୍ଡା ଭାଙ୍ଗିଗଲା । ଏଥର ବେଶି ଜଳ ଓ କେଶର ବୋହି ଆସିଲା । ଡାକ୍ତର ପୁଣି ପାଟିକରି କହିଲା, "ଇସ୍, ଦେଖ, କେତେ ପୂଜ ।"

ସେତେବେଳକୁ ମୁଁ କଷ୍ଟରେ ଛଟପଟ ହେଲଣି । ଖୋକରେ ରାଗ ରେ ଜଳି ଉଠିଲଣି । ଅଣ୍ଡାସବୁ ପାଟିରୁ କାଢ଼ି ପକାଇ କହିଲି,

"ବୋକା ଡାକ୍ତର, ଏଗୁଡ଼ା ପୂଜ ନୁହେଁ କ ବଦରକ୍ତ ନୁହେଁ । ଅଣ୍ଡାର ଲାଲ ଓ କେଶର । ନପଠ ବୋକା ଡାକ୍ତର, ଏତକ ଚହ୍ନି ପାରୁ ନାହଁ ।" ଏ ବୋକା ବଦମାସିଆ ଡାକ୍ତରକୁ ଲୋକେ ଭଲ ପା'ନ୍ତ ନାହିଁ । କାରଣ ସେ କଡ଼ା ଓ ବଟକଟିଆ ଔଷଧ



ଦିଏ । ରୋଗୀଙ୍କୁ ଭଲ କର ନ ପାର ମାର ପକାଏ । ସେବଲ ଏତକବେଳେ ତାକୁ ପଦେ କେତେ ଶୁଣାଇ ଦେବ ଯେ ଲୋକେ ଖୁସୀ ହେବେ । କନ୍ତୁ ଫଳ ହେଲ ଓଲଟା । ସମସ୍ତେ ହେଁ ହେଁ ହସିଉଠି ମୋତେ ଅଧିକରେ ଚେଁଖୋଇ କହିଲେ, "ଡାକ୍ତର ବୋକା ହେଲେ, ତୁମେ ତାଙ୍କ ଗୁରୁ, ବୁଢ଼ା ବୋକା ।"

ବୁଢ଼ୀ ଏକଥା ଶୁଣିସାର ପ୍ରଥମ ବନ୍ଧୁକୁ କହିଲା, "ତୁମ ବନ୍ଧୁ ବୋକାମିରେ ତୁମକୁ ବହୁତ ଟପି ଗଲେ । ତାଙ୍କୁ ଧନ୍ୟବାଦ । ହଉ, ତୁମେ ଜାଣ ଯେ, ମୁଁ ଗାଲକଟା ବଡ଼ ଓଲୁଙ୍କୁ ସଲାମ୍ କରଥିଲ ।"

# ହୁଣ୍ଡା କିପରି ରକ୍ଷା ହେଲା

ଗୋଟିଏ ବୁଢ଼ା ବରଗଛ । ତା ପାଖକୁ ଘରଟିଏ । ସେ ଘରେ ଗୋଟିଏ ବ୍ରାହ୍ମଣ ବାସ କରୁଥିଲା । ଏହି ଘରର ଜଣେ କେହି କେବେ ଆତ୍ମହତ୍ୟା କରିଥିଲା । ତା'ର ପ୍ରେତ ସେହି ବୁଢ଼ା-ବରଗଛରେ ରହୁଥିଲା । ସେ ଭୂତଟି ନିଜ ବଂଶର ଲୋକଙ୍କୁ ମୋଟେ ଦେଖିପାରୁ ନ ଥିଲା । ଭୂତ ତାଙ୍କ ଘରକୁ ପଥର, ହାଡ଼, ମଇଳା, ଗୋବର ଓ ବିଷ୍ଠା ପ୍ରଭୃତି ଫୋପାଡ଼ି ନାନାବାଟେ ତାଙ୍କୁ ହଟହଟା ହୀନସ୍ତା କରେ । ବେଳେ ବେଳେ ଭୟଙ୍କର ଶବ୍ଦ ଶୁଣାଏ । ବିଚିତ୍ର ବିକଟାଳ ରୂପ ଦେଖାଏ । ନାନା ପ୍ରକାରେ ଡରାଏ । ଭୂତର ଅତ୍ୟାଚାର ଫଳରେ ସେ ବଂଶ ଉଧେଇ ପାରିଲା ନାହିଁ । କ୍ରମେ ବଂଶ ଲୋପ ହେବାକୁ ବସିଲା । ଗୋଟିକ ପରେ ଗୋଟିଏ ମଲେ । କୁଳରେ ପାଣି ଦେବାକୁ କେହି ରହିଲେ ନାହିଁ । ଶେଷରେ ଗୋଟିଏ ଜୀବନ୍ତ ମଡ଼ ଭୂତର କୋପରୁ ବଞ୍ଚିଗଲା । ସେ ବିଚରାକୁ ଭୂତ ବଡ଼ ବିକଳ ପାଏ । ତାକୁ କଷ୍ଟ କରିବାକୁ ଭୂତ ନିଜର ସମ୍ମାନହାନି ବୋଲି ମନେ କରେ ।

ଯଦିଓ ବିଚରାଟି ଗୋଟିଏ ହୁଣ୍ଡା ଲୋକ, ତଥାପି ଗାଁରେ ସମାଜରେ ଯେତେବେଳେ ଅଛି ତାକୁ ବିବାହାଦି କରିବାକୁ ହେବ । ହେଲେ ତା ସାହି-ପଡ଼ିଶା ସଭା କରି ବିଚାର କଲେ ସେ ହୁଣ୍ଡାକୁ କିପରି ବିବାହ ଦେବା । ବହୁ ବିଚାର ପରେ ପ୍ରଥମ ପ୍ରସ୍ତାବରେ

ସ୍ଥିର ହେଲା ଯେ ତାକୁ ବିବାହ କରିବାକୁ ହେବ । ନୋହିଲେ ସାରା ଜାତିକୁ ଓ ଦେଶକୁ ନିନ୍ଦା ହେବ । ପୁଣି ହିତୈଷୀ ପ୍ରସ୍ତାବରେ ଠିକ୍ ହେଲା ଯେ ସେ ତାଙ୍କ ପଡ଼ୋଶୀ ଘର ଝିଅକୁ ବିଭା ହେବ । ସେ ଝିଅର ବିବାହ ବୟସ ଅନେକ ଆଗରୁ ହୋଇ ଯାଇଥିଲେ ବି ତାକୁ କେହି ବିଭା ହେଉ ନ ଥିଲେ । ଯେହେତୁ ସେ ଥିଲା ଗୋଟିଏ ରଣଚଣ୍ଡୀ । ଶାସ୍ତ୍ର କହେ 'ମନୁଷ୍ୟ ଜୀବନ ବିବାହ ବିନା ପୂର୍ଣ୍ଣ ନୁହେଁ । ଯେଉଁ ଘରେ ଘରଣୀ ନାହିଁ, ସେ ଘର ମଶାଣି ପରି ।' ତେଣୁ ସହଜରେ ତା'ର ବିବାହ ବ୍ୟବସ୍ଥା କରାଗଲା । ପଡ଼ୋଶୀ ଲୋକେ ତା'ର ବିବାହ କରିଦେଲେ । କିନ୍ତୁ ପେଟ ପୋଷିବାର ବୁଦ୍ଧିବାଟ କେହି ତାକୁ ବତାଇ ଦେଲେ ନାହିଁ । ସେ ବିଚରା ଆଗରୁ ନିତି ଭିକ ମାଗି ତା ପେଟ ଗୋଟାକ ପୋଷିପାରୁ ନ ଥିଲା । ଏବେ ହରିପାଠି ବୋଝ ଉପରେ ନଳିତାବିଡ଼ା ହେଲା । ରଣଚଣ୍ଡୀ ସ୍ତ୍ରୀଟି ପହଞ୍ଚିଲାମାତ୍ରେ ତା'ର ପହିଲି ବିବାଦ ହେଲା ତାକୁ ହଳେ କାନଫୁଲ ଓ ଭଲ ଶାଢ଼ୀ ଯୋଗାଇବାକୁ । ହୁଣ୍ଡା ବିଚରାଟି ଦିନସାରା ଦୁଆର ଦୁଆର ବୁଲି ଭିକ ମାଗେ । ଏବେ କିନ୍ତୁ ତାକୁ ଆଗପରି କେହି କିଛି ଦୟା କରନ୍ତି ନାହିଁ । କାରଣ ସେ ଜାତିଆଣ ବା ବିବାହଭୋଜି ଦେଇପାରି ନାହିଁ । ଦିନେ ସେ ସହରତମାମ ଦିନସାରା ବୁଲି ବୁଲି ସନ୍ଧ୍ୟାରେ ହତାଶ ଓ ହାଲିଆ ହୋଇ ଫେରିଲା । ବିଚରା ଘରେ ପାଦ ନ ଦେଉଣୁ ଘରଣୀ ତା'ର ପାଟିକରି ଉଠିଲା, "ହଇରେ, ଅକର୍ମା ଅଲସୁଆ ବ୍ରାହ୍ମଣ, ଏଡ଼େ ବେଳାବେଳ ଘରକୁ କାହିଁକି ଧାଇଁଛୁ ? ଏତେବେଳଯାଏ ତ ଥିଲୁ, ମୋ ପାଇଁ କ'ଣ ଆଣିଛୁ ଦେ ।" ଏହା କହି ତା ଉପରକୁ ଚଢ଼ିଯାଇ ତା ଦେହ ମୁଣ୍ଡ ତଲାସି ପକାଇଲା । ଯେମିତି ଦେଖିଲା ହୁଣ୍ଡା ତା'ପାଇଁ କିଛିହେଲେ ଆଣି ନାହିଁ, ତା'ର ରାଗର ସୀମା ରହିଲା ନାହିଁ । ତହୁଁ ତା ମୁଣ୍ଡରୁ

ପଗଡ଼ିଟା ଉଡ଼ିନେଇ ସେ ବୁଢ଼ା-ବରଗଛ ଉପରକୁ ଫିଙ୍ଗି ଦେଲା । ପୁରୁଣା ମୁଣ୍ଡି ଝାଡ଼ୁଟାଏ ଆଣି ଏପରି ଟାଙ୍କେ ଛେଚିଲା ଯେ ହୁଣ୍ଡା



ବପୁରବା, "ବାପାଲେ ମାଆଲେ ମଲିଗଲିଲେ" ଚିତ୍କାର କରି ରାଗରେ ଓ ଦୁଃଖରେ ସେ ଘରୁ ପଳାଇଗଲା । ଏତିକିରେ ରଣଚଣ୍ଡୀର କୋପ ଶାନ୍ତ ହେଲା ନାହିଁ । ଗୋଟେ ଠେଙ୍ଗା ନେଇ ବରଗଛକୁ ଟାଙ୍କେ ଛେଚିଲା । ଆଗରୁ ଫୋପାଡ଼ ଦେଇଥିବା ପଗଡ଼ିଟାକୁ ଆଣି ଚିର ଦେବାକୁ ଗଛ ଉପରକୁ ଡେଇଁ ପଡ଼ୁଥାଏ । ମାଡ଼ର ବର୍ଷା ସାଙ୍ଗକୁ ଗାଳିର ସୁଅ ବି ଛୁଟିଥାଏ । ଏ କାଣ୍ଡ ଦେଖି ଭୂତର ପିଲେହୁ ପାଣି ହୋଇଗଲା । ସେ ତା'ର ବହୁକାଳର ବସାଘୁଡ଼ ସେଠୁ ପଳାଇଗଲା ।

ଏହି ସମୟକୁ ହୁଣ୍ଡା ପଳାଇଯାଇ ସହର ବାହାରେ ହେଲାଣି । ସେ ମନରେ ସ୍ଥିର କଲାଣି ଯେ, ସେ କଳହୁଡ଼ୀ ସ୍ତ୍ରୀଟା ଥିଲାତକ ଆଉ

ସେ ଘର ମାଡ଼ିବ ନାହିଁ । ତା ବାଡ଼ରେ ପବନ ବେଗରେ ପଳାଉଥିବା ଭୂତ ବାଟରେ ହୁଣ୍ଡ୍ରାକୁ ଦେଖିଲା । ଦୁଃଖ ବିପଦ ବାଘ ଛେଳିକୁ ଏକାଠି ପାଣି ପିଆଇ ଥାଏ । ଯେଉଁ ହୁଣ୍ଡ୍ରାକୁ ଭୂତ ଆଉ ଆଖିରେ ବି ଅନାଏ ନାହିଁ, ତାକୁ ସେ ନମସ୍କାର କରି କହିଲା, "ରାମ, ରାମ ଭାଇ । ମୋତେ ଚିହ୍ନି ପାରୁ ନାହିଁ କି ? ମୁଁ ତୁମ ପଡ଼ୋଶୀ ଭୂତ । ବରଗଛରେ ଥିଲି । ତୁମ ରଣଚଣ୍ଡୀ ସ୍ତ୍ରୀ ତୁମକୁ କ'ଣ, ମୋତେ ବି ରଖେଇ ଦେଲା ନାହିଁ । ଆଜିଠାରୁ ଆମେ ଭାଇ ଭାଇ ହେଲେ । ଏଣିକି ଏକାଠି ସୁଖରେ ରହିବାକୁ ଚେଷ୍ଟା କରିବା । କିନ୍ତୁ ଶପଥ କର ତୁମେ ଆଉ ତା କତିକୁ ଫେରିବ ନାହିଁ ।" ହୁଣ୍ଡ୍ରା ବିଚରା ଏ ସମୟରେ ଏପରି ସାହାଯ୍ୟ ପାଇ ଭାରି ଖୁସି ହେଲା । ବଡ଼ ଆନନ୍ଦରେ ତା କଥାରେ ଶପଥ ନେଲା ।

ଦୁହେଁଯାକ ସାଙ୍ଗ ହୋଇ ଚାଲିଲେ । ଯାଉ ଯାଉ ବାଟରେ ଗୋଟିଏ ବଡ଼ ସହର ପଡ଼ିଲା । ସେ ସହର ଭିତରକୁ ନ ପଶୁଣୁ ଭୂତ ହୁଣ୍ଡ୍ରାକୁ କହିଲା, "ମୁଁ ଯାହା କହୁଛି, ଭାଇ ଶୁଣ । ମୁଁ ଯାହା କହିବି, ମୋ କଥା ଯଦି କରିବ ତେବେ ଜୀବନଯାକ ସୁଖରେ ରହିବ । ଏହି ସହରରେ ଦୁଇଟି ସୁନ୍ଦରୀ କନ୍ୟା ଅଛନ୍ତି । ଗୋଟିଏ ଉଜୀରଙ୍କ ଝିଅ । ଆଉଟି ହେଉଛି ସୁଲତାନ୍‌ଙ୍କର । ମୁଁ ଯାଇ ଉଜୀରଙ୍କ ଝିଅଠି ଲାଗିବି । ତା ବାପା ଯେତେ ଲାଗିଲେ ବି ତାକୁ ଭଲ କରିପାରିବେ ନାହିଁ । ଏ ମଧ୍ୟରେ ପବନ୍ଥ 'ଫକିର' ବେଶରେ ନିତି ତୁମେ ଗଳିକନ୍ଦରେ ବୁଲୁଥିବ । ତାଙ୍କ ଝିଅକୁ ଭଲ କରିବାକୁ ଉଜୀର ତୁମକୁ ଡାକି ଆସିବେ । ସେତିକିବେଳେ ତୁମେ ତୁମର ଜୀବନଯାକ ମନମୁତାବକ ସୁଖରେ ଚଳିବା ଭଳି ବ୍ୟବସ୍ଥା କରାଇ ନେବ । ତାଙ୍କ ଘରେ ତୁମକୁ ଦେଖିଲାମାତ୍ରେ ମୁଁ ସେ ଝିଅକୁ ଛାଡ଼ି ପଳାଇ ଆସିବି । ତା'ପରେ ମୁଁ ଯାଇ ସୁଲତାନ୍‌ଙ୍କ ଝିଅଠି ରହିବି;

କଲୁ ବୁଝି ଖବରଦାର୍, ସେଠାକୁ କେବେ ତୁମେ ଯିବନ । ମୁଁ ତାକୁ ଘର ଭଲ ପାଏ । ତାକୁ ଛାଡ଼ ମୁଁ ରହି ପାରବ ନାହିଁ । ଦୁଃସାହସ କର ଯଦ କେବେ ସେଠାକୁ ଯିବ ତେବେ ତୁମ ବେକକୁ ମୋଡ଼ ଦେବ । ଏହା କହି ଭୂତ ଉଭେଇଗଲା । ହୁଣ୍ଡା ସହର ଭିତରକୁ ଗଲା । ଭଡ଼ା ଘରଟିଏ ନେଇ ରହିଲା ।

ତା ପରଦନ ସହରତମାମ ହୁର ହୋଇଗଲା ଯେ, ଜମିଦାରଙ୍କ ସୁନ୍ଦରୀ ଝିଅଟିକୁ ଭୟାନକ ରୋଗ ଧରଛି । ଡାକ୍ତର, ବଇଦ, କବରାଜ, ଗୁଣିଆ, ମୁଣିଆ ଓ ହାକମ ସବୁ ଥକଲେଣି । ବଞ୍ଚିବାର ସାମାନ୍ୟ ଆଶା ନାହିଁ । ଜମିଦାର ଏକମାତ୍ର ସନ୍ତାନର ଭଲ ଗତ ଦେଖି ନ ପାର ଘୋଷଣା କଲେ, ଯେ ତାକୁ ଭଲ କରଦେବ ସେ ତାକୁ ତାଙ୍କ ସମ୍ପତ୍ତିର ଅଧା ଦେବେ । ଏଣେ ସେ ହୁଣ୍ଡା 'ଫକର' ବେଶରେ ଦେହ ମୁଣ୍ଡ ପାଉଁଶ ଓ ମାଟି ବୋଳ ସହରରେ ବୁଲୁଛି । ଥରେ ଥରେ ବଡ଼ ପାଟିରେ ଡାକ ମାରୁଛି, "ବଂ ବଂ ଭୋ, ବଂ ବଂ ଭୋଲାନାଥ" । ହୁଣ୍ଡାର ଅପୂର୍ବ ବେଶ ଓ ଡାକ ଶୁଣି ଲୋକେ ଭାବଲେ ସେ ଜଣେ ଉତ୍ତମ ସାଧୁ । ଲୋକେ ଜମିଦାରଙ୍କୁ ଏ କଥା ଜଣାଇଲେ । ଜମିଦାର ତାଙ୍କ ଥାଚ ସହ ଆସି, ହୁଣ୍ଡା ପାଦତଳେ ଲମ୍ବ ହୋଇ ପଡ଼ଲେ । ସବୁକଥା ଜଣାଇ ଝିଅକୁ ଭଲ କର ଦେବାକୁ ଗୁହାର କଲେ । ଆଗ ନାହିଁ କର ହୁଣ୍ଡା ଯିବାକୁ ଅମଙ୍ଗ ହେଲା । ବହୁ ଅନୁନୟ ବନୟ ପରେ ଜମିଦାରଙ୍କ ଘରକୁ ଗଲା । ଝିଅକୁ ହୁଣ୍ଡା ନକଟକୁ ଅଣାଗଲା । ଝିଅଟି ବଡ଼ ଅସ୍ତବ୍ୟସ୍ତ ହେଉଥାଏ । ଆଖି ତରଗଟି ଘୂରୁଥାଏ । ମୁଣ୍ଡବାଳ ମୁକୁଳା କରଥାଏ । ତାକୁ ଦେଖିଲାକ୍ଷଣି ହୁଣ୍ଡା ହାକମି ସ୍ୱରରେ କହିଲା—

"ଭୂତ ପ୍ରେତ ପିଶାଚ ଡାହାଣୀ
ଛୁ ମନ୍ତର, ହବ୍‌ନକାଲ୍ ଜାନ ।"

ସେ ଗର୍ଜନ କରି ଗୁଡ଼େ ମିଛମିଛକା ମନ୍ତ୍ର ଆବୃତ୍ତି ପଢ଼ିଲା । ଭୂତ ଭୟରେ ଥରହର ହୋଇ କହିଲା, "ମୁଁ ଗଲି, ଠାକୁର, ମୁଁ ଗଲି ।" ହୁଣ୍ଡା ଭୂତକୁ କହିଲା, "ତୁ ଏ ଝିଅକୁ ଛାଡ଼ିକରି ଯିବାର ପ୍ରମାଣ ଦେଇଯାଆ ।" ଭୂତ କହିଲା, ଯେତେବେଳେ ସେ ବାଟରେ ଥିବା କଇଁଆଗଛ ଉପୁଡ଼ି ପଡ଼ିବ, ଜାଣିବ ଯେ ମୁଁ ଝିଅକୁ ଛାଡ଼ିକରି ଗଲି । ଏତିକରୁ ମୋ ଯିବା ପ୍ରମାଣ ଜାଣିବ ।" ଏତିକି କହି ଭୂତ ଝିଅକୁ ଛାଡ଼ି ଗଛକୁ ଉପାଡ଼ି ପଳାଇଗଲା । ଏ କଥା ସାରା ସହର ଭିତ ଭିତ ହୋଇଗଲା । ହୁଣ୍ଡା ଉପରେ ସହରବାସୀଙ୍କର ପ୍ରଶଂସା ଓ ଆଦର ଅଜାଡ଼ି ହୋଇପଡ଼ିଲା । ଉଜୀର ତାଙ୍କ ପଣ ଅନୁଯାୟୀ ହୁଣ୍ଡାକୁ ତାଙ୍କ ସକଳ ସମ୍ପତ୍ତିର ଅଧା ଦେଲେ । ହୁଣ୍ଡା ସୁଖରେ ଦିନ କଟାଇଲା ।

କେତେଦିନ ପରେ ଭୂତ ଯାଇ ରାଜାଝିଅଠାରେ ଲାଗିଲା । ସେତେବେଳକୁ ହୁଣ୍ଡାର ଖ୍ୟାତି ରାଜାଙ୍କ ନିକଟରେ ପହଞ୍ଚି ସାରିଥିଲା । ତା ନିକଟକୁ ରାଜା ଦୂତ ପଠାଇଲେ । ହୁଣ୍ଡାର ଭୂତ କହିଥିବା କଥା ମନରେ ଥିଲା । ତା ଭୟରେ ସେ ସେଠାକୁ ଯିବାକୁ ମଙ୍ଗିଲା ନାହିଁ । ତାକୁ ଯେତେ ଧନଦୌଲତ ମାନସମ୍ମାନ ଯାଚି ଗଲେ ବି ହୁଣ୍ଡା କାହାରେ ଟଳିଲା ନାହିଁ । ଏଥିରେ ସୁଲତାନ୍ ରାଗିଯାଇ ତାକୁ ବାନ୍ଧି ଆଣିବାକୁ ଲୋକ ପଠାଇଲେ । ନ ଆସିଲେ ମୁଣ୍ଡକାଟି କରିବାକୁ ହୁକୁମ୍ ଦେଲେ । ଏପରିସ୍ଥଳେ ଯିବା ଛଡ଼ା ହୁଣ୍ଡା ଅନ୍ୟ ଗତି ଦେଖିଲା ନାହିଁ ।

ବିଚରା ପାଇମିଛ ଗହଣରେ ରାଜାଙ୍କ ନଅରକୁ ଗଲା ସିନା, ମନରେ କିନ୍ତୁ ବଡ଼ ଚିନ୍ତା । କିପରି ଭୂତ କବଳରୁ ମୁକୁଳିବ । ଭୂତ ତାକୁ ଦେଖି ପକାଇଲାମାତ୍ରେ ରାଗରେ ରଡ଼ି କରି ଉଠିଲା । କହିଲା,

“ହଇରେ ମୂର୍ଖ ହୁଣ୍ଡା ତୋର ଏତେ ବହପ । ପୂର୍ବକଥା ପାସୋର ଦେଲୁ ? ମୋ ଆଗକୁ ଧାଇଁଛୁ ? ତୋର ଆୟୁଷ ପୂରଲଣି । ତୋତେ ଯମଦ୍ୱାର ଡାକିଲଣି । ଦେଖେ, ଦେଖେ, ତୋ ବେକ ମୋଡ଼ିଲ ।” ତହୁଁ ହୁଣ୍ଡା କହିଲ, “ଭାଇରେ ମୁଁ ତୋ ସଙ୍ଗେ ଲଗିବାକୁ ଆସିନାହିଁ । ଗୋଟେ ବଡ଼ ଦୁଃଖ ବିପଦର କଥା କହିବାକୁ ଆସିଛି । ଏତେ ଲୋକରେ ସେ କଥା କହି ହେବ ନାହିଁ ।



ଭୂନ କର ଅଲଗା କହିବ ।” ଏହା କହି ସେ ରଜାଝିଅ ପାଖକୁ ଯାଇ ତା କାନରେ ଫୁସ୍ ଫୁସ୍ କର କହିଲ, “କ’ଣ କହିବ ଭୂତ ଭାଇରେ, ତୁ ମୋର ହର୍ତ୍ତାକର୍ତ୍ତା ଦଇବ ବିଧାତା । ତୋର ବାହୁ-ଛାୟାରେ ଆମ ଚଉଦପୁରୁଷ ସୁଖରେ ଥିଲେ । ତୋର ସ୍ନେହରୁ ତୋର କଇଲଣରୁ କେତେ ମଉଜରେ ସୁଖରେ ମୁଁ ଏଠି ଥିଲି ।

ହାୟ, ହାୟରେ କପାଳ, ଆମେ ଆଉ ଏଠି ଠାକ ପାରିବା ନାହିଁ । ସେ ଅନ୍ଧାରୁଣୀ ସ୍ତ୍ରୀ ଲୋକଟି ପୁଣି ଏଠାକୁ ଗୋଡ଼େଇ ଆସିଛି । ସେ ରଣଚଣ୍ଡୀ ଏଇନେ ଏଇ ନଅର ଆଡ଼େ ଆସୁଛି । ଏଇ ଦଣ୍ଡକେ ଆସି ପହଞ୍ଚିବ । ଏହାକହି ବଡ଼ ବିକଳରେ ହୁଣ୍ଡା ମିଛରେ କାନ୍ଦିବାକୁ ଲାଗିଲା । ଏତିକିରେ ଭୂତ ଚିତ୍କାର କରି ଉଠିଲା, "ମୁଁ ଯାଉଛି, ଯାଉଛି । ସେ କଳହୁଣ୍ଡୀ ସ୍ତ୍ରୀ ଏଠାକୁ ଅଇଲାଣି ମୁଁ ଯାଉଛି, ବେଗେ ବାଟ ଛାଡ଼ । କବାଟ ଫିଟା ଫିଟା, ମୁଁ ଗଲି, ଏଠି ଆଉ ରହିବି ନାହିଁ । କାନ୍ଥ ବାଡ଼କୁ ଦୋହଲାଇ, କବାଟ, ଜୁଳୁକ ଧଡ଼୍ ଧାଡ଼୍ କରି ଭୂତ ଅନ୍ତରୀକ୍ଷରେ ଚାଲିଗଲା । ଚିରଦିନ ପାଇଁ ଗଲା, ଆଉ ଫେରିଲା ନାହିଁ । ତା'ପରେ ହୁଣ୍ଡା ସେ ରଜା ଝିଅକୁ ବିଭାହେଲା । ରଜା ମହଲରୁ ରାଜଗାଦି ଭୋଗ କଲା । ଅତି ସୁଖରେ ହୁଣ୍ଡାର ଦିନ ବିତିଲା ।

# ଚଷା ଓ ବଣିଆ କଥା

ଜଣେ ବଣିଆ, ତା'ର ଗାଁରେ ଗୋଟିଏ ଦୋକାନ କରିଥାଏ । ତା ଦୋକାନରେ ଡାଲି, ଗୁଡ଼ଜଳ, ଲୁଣ, ତେଲ ଓ ଗାଁବାଲାଙ୍କର ଦରକାରି ଆଉ ଆଉ ଜିନିଷ ସବୁ ମିଳେ । ଦିନେ ସେ ସଉଦା ଆଣିବାକୁ ପାଖ ସହରକୁ ଯାଉଥିଲାବେଳେ ବାଟରେ ଗୋଟିଏ ଗରିବ ଚଷାକୁ ଭେଟିଲା । ଚଷା ବି ସେହି ସହରକୁ ଯାଉଥିଲା । ତା'ର ଜଣେ ମହାଜନକୁ କରଜ ଟଙ୍କାର ସୁଧ ଦେବାକୁ ଥାଏ । ତା ଅଣଜେଜେବାପ ତା ଜେଜେବାପାର ବଭାଘରକୁ ସେ ମହାଜନ-ଠାରୁ ଟଙ୍କା କରଜ ଆଣିଥିଲେ । ସେ ମୂଳ କରଜ ମାତ୍ର ଶହେଟଙ୍କା ଆଣିଥିଲା । ସେହି ମୂଳ ଟଙ୍କା, ଗଲା କେତେବର୍ଷର ସୁଧ, ସୁଧର ସୁଧ, ଏମିତି ବଢ଼ି ବଢ଼ି ଦଶଗୁଣା ହୋଇଗଲାଣି । ବଣିଆ ଗରିବ ଚଷାକୁ ଦେଖି କହିଲା, "ତୁମେ ଚୌଧୁରି ବୋଧହୁଏ, ସେ ବଡ଼ ମହାଜନ ପାଖକୁ କିସ୍ତି ସୁଧ ଦେବାକୁ ଯାଉଛ ? ତୁମ ଜମି କେଇ-ଗୁଣ୍ଠ କ'ଣ ତା କବଳରୁ ଖସାଇ ଆଣିପାରିବ ?" ବସୁରି ଚଷା କହିଲା, ହଁ, ସାହୁ ଭାଇ, ମୋ ଦୁଃଖ ତ ତୁମକୁ ଜଣା । ମୋ ଅଣଜେଜେବାପ ମୋଟେ ଶହେଟା ଟଙ୍କା ଆଣିଥିଲା । ସେ ବଢ଼ି ବଢ଼ି ଏବେ ହଜାରେ ହେଲାଣି । ମୋର ଏଇ ଜମି କେଇଗୁଣ୍ଠ ତା'ର ଏତେ ଟଙ୍କାକୁ କ'ଣ ପାଇବ ?"

ତା'ପରେ ବଣିଆ କହିଲା, "ଚୌଧୁରୀ ଭାଇ, ଚିନ୍ତା କର ନାହିଁ । ଯାହା କପାଳରେ ଯାହା ଲେଖାଥିବ ତାହା ଘଟିବ । କିଛି ପରୁଆ କର ନାହିଁ । ଆମର ଏ ଲମ୍ବା ବାଟ କିପରି ସରିବ ଚିନ୍ତା କର । ମୁଁ ଭାବୁଛି ଗପ କରି କରି ଗଲେ ବାଟ ବେଗେ ସରନ୍ତା ।"



ଚଷା କହିଲା, "ଭଲ କଥାଟିଏ କହିଛ ସାହୁ ଭାଇ, ତୁମ କଥାରେ ମୁଁ ପୂରା ରାଜି । କପାଳରେ ଯାହା ଅଛି, ସେଥିପାଇଁ କାନ୍ଦିବା କାହିଁକି । ଏ ଢକ୍‌ଦାରିଆ ବାଟ ଚଲଟା ହେଲେ କଥାଲହସରେ ସରିଯିବ । କିନ୍ତୁ ଗୋଟିଏ କଥା ଆମର ବାଜି ରହିଲା, ଯେଉଁ କଥାଟା ଯେତେ ମିଛ ବା ଅସମ୍ଭବ ତାକୁ ଆମେ ସେତେ ମିଛ ବା ମନଗଢ଼ା ବୋଲି କହିବା ନାହିଁ । ଯେ ଏକଥା ଲଙ୍ଘିବ ସେ ଅନ୍ୟକୁ

ବଜାରେ ଟଙ୍କା ଦେବ । ଠିକ୍ କହୁଛ ଭାଇ, ମୋର ବି ଏଥିରେ ଏକମତ ।” ଏହା କହି ବଣିଆ ତା ଗପ କହିବାକୁ ଆରମ୍ଭ କଲା ।

“ତେମେ ତ ଜାଣ, ମୋ ପଣଜେଜେବାପା ବଣିଆ କୁଳରେ ଜଣେ ବରିଷ୍ଠ ବଡ଼ଲୋକ ଓ ଭାରି ଧନୀ ଥିଲେ ।”

“ସତ, ସାହୁଭାଇ, ସତ” ଚଷା କହିଲା ।

“ଆମର ଏଇ ବଡ଼ବଡ଼େ ଅରେ ଗୁଳିଶିଟା ଜାହାଜରେ ହୀରା, ନିଳା, ମୋତି, ମାଣିକ୍ୟ ବୋଝେଇ କରି ଚୀନ୍ ଦେଶକୁ ବେପାର କରି ଯାଇଥିଲେ ।”

“ସତ ସାହୁ ଭାଇ, ସତ କହିଲ” ଚଷା କହିଲା ।

“ହଁ, ସେମାନେ ସେଠି ତାଙ୍କ ବେପାରବଣିଜ ସାରି ବହୁତ ଦିନରେ ଫେରିଲେ । ଫେରିଲାବେଳେ ସେ ଦେଶରୁ ଅନେକ ଅପୂର୍ବ ଜିନିଷ ଆଣିଥିଲେ । ଥରେ ସେ ଖାଣ୍ଟି ସୁନାର ଗୋଟିଏ ପ୍ରତିମା ଆଣିଥିଲେ । ତାହା ଏମିତି କୌଶଳରେ ତିଆରି ହୋଇଥିଲା ଯେ, ତାକୁ ଯାହା ପ୍ରଶ୍ନ କଲେ ବି ସେ ଉତ୍ତର ଦେଉଥିଲା ।

“ସତ ସାହୁ ଭାଇ ସତ” ଚଷା କହିଲା ।

“ସୁନାର ପ୍ରତିମା ଆମ ଘରକୁ ଆସିଗଲା, ତାକୁ ଦେଖିବାକୁ ଗଦା ଗଦା ଲୋକ ଆସିଲେ । କାହା କପାଳରେ କ’ଣ ଅଛି ସମସ୍ତେ ତାକୁ ପଚାରିଲେ । ସେ ପ୍ରତିମା ସବୁ ଠିକ୍ କହିଦେଲା । ବୁଝିଲୁ, ଦିନେ ତୋ ଅଣଜେଜେବାପା ଆସି ସେ ସୁନାପ୍ରତିମାକୁ ପଚାରିଲେ, “ମଣିଷଙ୍କ ଭିତରେ କେଉଁ ଜାତିର ଲୋକ ସବୁଠୁ ସିଆଣିଆ ?” ପ୍ରତିମା ଉତ୍ତର ଦେଲା, “ବଣିଆ” । ପୁଣି ପଚାରିଲେ “ଦୁନିଆରେ ସବୁଠ ବୋକା କେଉଁ ଜାତି ।” ଉତ୍ତର ମିଳିଲା, “ଚଷା” । ସେ ପ୍ରଶ୍ନ ପଚାରିଲେ, “କହିଲ ଦେଖି, ଆମ ବଂଶରେ

ସବୁଠୁ ବଡ଼ ଓଲୁ କିଏ ?" ପ୍ରତିମା କହିଲା, "ଚୌଧୁରୀ ଲହରୀ ସିଂ" । ଏହା ସେହି ଚଷାର ନାମ ।

"ସତ ସାହୁ ଭାଇ ସତ" ଚଷା କହିଲା ।

ଅବଶ୍ୟ ସେତେବେଳକୁ ରାଗରେ ତାର ହାଡ଼ ଜଳୁଥାଏ । ମନେ ମନେ ବିଚାରୁଥାଏ ବଣିଆକୁ ଏମିତି ଦଗାଏ ଦେବ ଯେ, ଯେପରି ପୁଅ କାଳକାଳକୁ ମନେ ପକାଉଥିବ ।

ବଣିଆ କହିଲା, "ହଁ, ତା'ପରେ ସୁନାମୂର୍ତ୍ତି କଥା ଆସ୍ତେ ଆସ୍ତେ ସାରା ଦେଶରେ ଚହଳ ପଡ଼ିଗଲା । ଶେଷରେ ଏହି କଥା ରାଜାଙ୍କ କାନକୁ ଗଲା । ରାଜା ମୋ ପଣଜେଜେବାପାଙ୍କୁ ଡକାଇଲେ ଓ ତାଙ୍କଠାରୁ ସେ ସୁନାପ୍ରତିମା ନେଇ ତାଙ୍କୁ ମନ୍ତ୍ରୀ କରାଇଲେ ।

"ସତ ସାହୁ ଭାଇ ସତ" ଚଷା କହିଲା ।

ଆମ ପଣଜେଜେବାପା ବହୁଦିନ ମନ୍ତ୍ରୀ ହୋଇ ରହିଲେ । ସେ ରାଜାଙ୍କର ଅତି ପ୍ରିୟ ଓ ଅତ୍ୟନ୍ତ ବିଶ୍ୱାସୀ ଥିଲେ । ରାଜା ତାଙ୍କ ବିନା ପରାମର୍ଶରେ କିଛି କରୁ ନ ଥିଲେ । ସେ ମରିଯିବାରୁ ମୋ ଜେଜେବାପା ତାଙ୍କ କାମରେ ରହିଲେ । ସେ କିନ୍ତୁ ରାଜକାର୍ଯ୍ୟରେ ବିଶେଷ ମନ ଦେଲେ ନାହିଁ । ଭୋଗବିଳାସରେ ବେଳ କାଟିଲେ । ରାଜା ଏଥିରେ ବଡ଼ ଅସନ୍ତୁଷ୍ଟ ହେଲେ ଓ ତାଙ୍କୁ ହାତୀ କୁଦେଇ ମାରି ଦେବାକୁ ହୁକୁମ ଦେଲେ । ତାଙ୍କୁ ମାରିବାକୁ ଗୋଟାଏ ବଡ଼ ପାଗଳ ଦନ୍ତାହାତୀ ଅଣାଗଲା । କିନ୍ତୁ ସେ ଦୁଷ୍ଟ ହାତୀଟା ତାଙ୍କୁ ଦେଖିଲାମାତ୍ରେ ଥପ୍ପ ହୋଇଗଲା । ତାଙ୍କୁ ମାରିବ କ'ଣ ଯାଇ ତାଙ୍କୁ ନମସ୍କାର କଲା, ଶୁଣ୍ଢରେ ଉଠାଇ ନେଇ ତା ପିଠିରେ ବସାଇ ଦେଲା ।"

"ସତ ସାହୁ ଭାଇ ସତ" ଚଷା କହିଲା ।

"ଆଚ୍ଛା, ତା'ପରେ । ହଁ, ରାଜା ଯେତେବେଳେ ଦେଖିଲେ ପାଗଳ ହାତି ମୋ ଜେଜେବାପାଙ୍କୁ ମାରିଲା ନାହିଁ, ତାଙ୍କ ରାଗ ଆପେ ଶାନ୍ତ ହୋଇଗଲା । ତାଙ୍କୁ ପୁଣି କହିପୋଛି ତାଙ୍କ କାମରେ ରଖାଇଲେ ଓ ବହୁ ଆଦର କଲେ । ସେ ମଲାପରେ ମୋ ବାପା ପୁଣି ମନ୍ତ୍ରୀ ହେଲେ । ତାଙ୍କର ରାଜ୍ୟ ଶାସନ କାମରେ ଆଦୌ ମନ ନ ଥିଲା । ସେ ରାଜକାର୍ଯ୍ୟ ଛାଡ଼ିଦେଲେ । ବାବାଜୀ ହୋଇ ତୀର୍ଥ କରିଗଲେ ଓ ଦୁନିଆ ସାରା ବୁଲି ବୁଲି ବହୁତ ଆଶ୍ଚର୍ଯ୍ୟ କଥାମାନ ଦେଖିଲେ । ଯଥା—ଏକଗୋଡ଼ିଆ ମଣିଷ, ଏକଆଖିଆ ମଣିଷ ଓ ଅସୁର ପ୍ରଭୃତି । ଦିନେ ମୋ ବାପା ଗୋଟିଏ ମଶା ଦେଖିଲେ । ମଶା ତାଙ୍କୁ କାମୁଡ଼ିବା ପାଇଁ କାନ ପାଖେ ଗୁଣୁ ଗୁଣୁ ହେଲା । ବାପା ମୋର ବଡ଼ ଅଡ଼ୁଆରେ ପଡ଼ିଲେ । କ'ଣ କରିବେ କିଛି ଭାବି ପାରିଲେ ନାହିଁ । ତୁମେ ତ ଜାଣ, ଆମ ବଣିଆ ଜାତିରେ ଜୀବଜନ୍ତୁ ମାରନ୍ତି ନାହିଁ ।"

"ସତ ସାହୁ ଭାଇ ସତ" ଚୌଧୁରୀ କହିଲା ।

"ତହୁଁ ମୋ ବାପା ଭୂଇଁରେ ଲମ୍ୱ ହୋଇପଡ଼ି ମଶାକୁ ଜୁହାର କଲେ । ତାଙ୍କୁ ନ କାମୁଡ଼ିବାକୁ ବିନମ୍ର ହୋଇ ଗୁହାରି କଲେ । ଏତିକରେ ମଶା ଖୁସୀ ହୋଇ କହିଲା, "ସାବାସ୍, ସାହୁଜୀ, ମୁଁ ଦେଖୁଛି, ତୁମେଇ ପ୍ରକୃତରେ ବଡ଼ଲୋକ । ମୁଁ ତୁମର କିଛି ଉପକାର କରିବାକୁ ଚାହେଁ ।' ଏହାକହି ମଶା ତା ପାଟି ମେଲାଇ ଦେଲା । ମୋ ବାପା ତା ପାଟି ଭିତରେ ଦେଖିଲେ ଏକ ନଅର । ସୁନାରେ ତିଆରି, ଘର ଚକମକ । ସେଥିରେ ଅନେକ ଝରକା, ଦୁଆରବନ୍ଧ, ଫାଟକମାନ ଲଗିଛି । ଗୋଟିଏ ଝରକା ପାଖରେ ଦିବ୍ୟସୁନ୍ଦରୀ ସ୍ତ୍ରୀଟିଏ ଠିଆ ହୋଇଛି ଓ ଜଣେ ଚଷା ତାକୁ ଆକ୍ରମଣ

କରିବାକୁ ଚେଷ୍ଟା କରୁଛି । ମୋ ବାପା ଏହା ଦେଖି ପାରିଲେ । ସେ ତ ଜଣେ ଖୁବ୍ ନାମ୍‌ଜାଦା ଦୁର୍ଦ୍ଧାନ୍ତ ବୀର । ସେ ଟପ୍‌କିନା ମଣାର ପାଟି ଭିତରକୁ ଡେଇଁ ପଡ଼ିଲେ ଓ ତା ପେଟ ଭିତରକୁ ଗୃଲିଗଲେ । ସେଠି ଦେଖିଲେ ଚାରିଆଡ଼ ଅନ୍ଧାର । ସେ ମଣା ପେଟ ଭିତରେ ବନ୍ଦୀ ହେଲେ ।"

"ମନ ସାହ୍ସା ବାଇ ସତ" ଚଷା କହିଲା ।

"କିଛି ସମୟ ପରେ ଅନ୍ଧାର ଉଭେଇଗଲା । ମୋ ବାପା ପୁଣି ସେହି ନଅର, ସେହି ସୁନ୍ଦରୀ ସ୍ତ୍ରୀ ଓ ସେହି ଦୁଷ୍ଟ ଚଷାକୁ ଦେଖି ପାରିଲେ । ମୋ ବାପା ବଡ଼ ସାହସୀ ଲୋକ । ତେଣୁ ସେ ଚଷାକୁ ଚଡ଼ାଉ କଲେ । ସେ ଚଷା ଆଉ କେହି ନୁହେଁ, ସେ ତୋର ବାପା । ସେ ଦୁହେଁ ମଣା ପେଟରେ କର୍ଷେ କାଳ ଲଢ଼େଇ କଲେ । ଶେଷରେ ତୋ ବାପା ହାରିଲେ ଓ ତା'ପରେ ମୋ ବାପା ସେ ରାଜା ଝିଅକୁ ବାହା ହୋଇ ସେହି ନଅରରେ ରହିଲେ । ମୁଁ ସେହିଠାରେ ଜନ୍ମ ହୋଇଥିଲି । ତୋ ବାପା ମୋ ବାପା ପାଖରେ ଚାକର କଲେ । ସେ ହନରାତି ଦୁଆର ଜଗି ବସନ୍ତି । ମୋର ଯେତେବେଳକୁ ବୟସ ପନ୍ଦର, ହଠାତ୍ ଆମ ଉପରେ ପ୍ରବଳ ଗରମ ପାଣି ବର୍ଷା ହେଲା । ଆମେ ସେଥିରେ ଭସିଯାଇ ଗୋଟେ ଗରମ ସମୁଦ୍ରରେ ପଶିଗଲୁ । ଆମେ ଚାରିଜଣ ଅତି କଷ୍ଟରେ କୂଳରେ ଲାଗିଲୁ । ମୋ ବାପା, ତୋ ବାପା, ମୋ ମା—ସେ ରାଜାଝିଅ ଓ ମୁଁ ଏକା ତିଆଁକେ ସମୁଦ୍ରରୁ ଯାଇ କୂଳରେ ପହଞ୍ଚିଲୁ । ଓଃ, କି ଆଶ୍ଚର୍ଯ୍ୟ କଥା ! ଦେଖିଲାବେଳକୁ ଆମେସବୁ ଜଣକ ରୋଷେଇ ଘରେ ପହଞ୍ଚି ଯାଇଛୁ । ସେ ଘରେ ରୋଷେଇ କରୁଥିବା ସ୍ତ୍ରୀ ଆମକୁ ଦେଖି ଡରରେ ଗୁହାରି । ତା'ର ଭୟ ଯେ, ଆମେମାନେ ଭୂତ । ଆମେ ଭୂତ ନୁହଁ ବୋଲି ତାଙ୍କୁ ଅନେକ ବୁଝାଇଲୁ । ବହୁ କଷ୍ଟରେ

ସେ ଆମ କଥାକୁ ସତ ମାନିଲ ଓ କହିଲ, "ତୁମେମାନେ ତେବେ ମୋ ପେଟଭିତରେ ବସିଥିଲ ? ମୁଁ ମାଛ ଧରୁଥିଲି, ସେ ଡେଲି ପାଣିରେ ପଶି ଏପରି ଉପରିଲ କାହିଁକି ?" ଆମ୍ଭେମାନେ ତାଙ୍କ ଉତ୍କଣ୍ଠା ଆଟିକାକୁ କପର ଆସିଲୁ ତାହା ଜାଣିପାରି ନ ଥିବାରୁ ସମସ୍ତେ ଦୋଷ ମାଗିଲୁ । ଆମେ ତ ମଶା ପେଟ ଭିତରେ ପନ୍ଦର ବର୍ଷ ହେଲ ଥିଲୁ । ସେଷାଇ କରୁଥିବା ସ୍ତ୍ରୀ ଲୋକ କହିଲ, "ହଁ, ହଁ, ମୋର ମନେପଡ଼ୁଛି ପନ୍ଦର ମିନିଟ୍ ତଳେ ଗୋଟେ ମଶା ମୋ ଡେଣାରେ ବସି କାମୁଡ଼ି ଦେଇଥିଲ । ଏଇ ଦେଖ, ମଶାର କାମୁଡ଼ା ଚିହ୍ନ । ସେଇ ମଶା ତୁମମାନଙ୍କୁ ମୋ ଡେଣାରେ ପୂରାଇ ଦେଇଥିଲ ବୋଧେ । ସେଇଯୋଗୁଁ ଅନ୍ତ ଟାଣରେ ବନ୍ଧୁଥିଲ । ବିଷ ବାହାରି କରି ଦେବାକୁ ମଶା କାମୁଡ଼ା ଜାଗାଟାକୁ ଚିପି ଦେଲି । ସେଥିରୁ ସୋରିଷ ପରି କଳା ମଞ୍ଜିଟିଏ ବାହାରିଲ । ସେଇ ମଞ୍ଜିଟି ବୋଧେ ତଳେ ପାଣି ଆଟିକାରେ ପଡ଼ି ଯାଇଥିବ । ତୁମେମାନେ ତା ଭିତରେ ଥିବା କଥା ମୁଁ ଆଦୌ ଅନୁମାନ କରିପାରି ନାହିଁ ।" ତାଙ୍କୁ ମୋ ବାପା କହିଲେ, "ଆଚ୍ଛା ଦେଖ, ଆମେ ତୁମ ଆଟିକାକୁ ଯେପରି ଆସିଲୁ ବୋଲି କହୁଛ, ତାହା ସତ ବୋଲି ମୋର ହୃଦ୍‌ବୋଧ ହେଉଛି । ଆମର ପନ୍ଦର ବର୍ଷଟା ତୁମର ପନ୍ଦର ମିନିଟ୍ ହୋଇଥିବ ।" ସତ କହିଲେ, ମୋର ବୟସ ମୋଟେ ପନ୍ଦର ମିନିଟ୍ । ମୁଁ ଆକାରରେ ଓ ବୟସରେ ସିନା ପନ୍ଦର ବର୍ଷିଆ ପରି ଦେଖାଯାଉଛି । ଆମକୁ ଆଶ୍ଚର୍ଯ୍ୟ ଲଗିଲ, ଆମେ ମଶା ପେଟ ଭିତରେ ମୋଟେ ପନ୍ଦର ମିନିଟ୍ ଥିଲୁ । କିନ୍ତୁ ସେହି ସମୟ ଭିତରେ ମୁଁ ଜନମ ହେଲି, ବଢ଼ିଲି, ପୁଣି ପନ୍ଦର ବର୍ଷର ହୋଇଗଲି । ତୋ ବାପା ଓ ମୋ ବାପାଙ୍କୁ ପନ୍ଦର ବର୍ଷ ଅଧିକ ହୋଇଗଲ । ମୁଁ ଏବେ ପଚିଶି ବା ତିରିଶରୁ ଅଧିକ ବୟସର ଦେଖା ଯାଉଛି; କିନ୍ତୁ ସତରେ

ମୁଁ ଦଶ ବର୍ଷର ପିଲା ମାତ୍ର । ମଣିଷ ପେଟ ଭିତରେ ପନ୍ଦର ମିନଟ୍ ରହିବା ଫଳରେ ଏତେ ବଡ଼ ହୋଇ ଯାଇଛୁ ।”

“ସତ ସାହୁ ଭାଇ ସତ” ଚଷା କହିଲା ।

“ଆମେ ସେ ଦେଶରୁ ବାହାରି ଆସିଲୁ । ଦେଖିଲାବେଳକୁ ଆମେ ଆମର ଏଇ ଗାଁରେ ଅଛୁ । ମୋ ବାପା ଯେ ମନ୍ତ୍ରୀ ଥିଲେ, ସେ ଏବେ ଦୋକାନ ଦେଇଛନ୍ତି । ମୁଁ ତାଙ୍କୁ ଦୋକାନରେ ସାହାଯ୍ୟ କରୁଛି । ସେ ରାଜାଝିଅ ମୋ ମା’ ଏବେ ମରିଗଲା, ଜାଣିଥିବ ତ । ଏତିକରେ ମୋ କଥା ସରିଲା ।”

“ସତ ସାହୁ ଭାଇ ସତ” ଚଷା କହିଲା । ତୁମ କଥାଟି ବିଲ୍‌କୁଲ୍ ସତ । ମୁଁ ଯେଉଁ କଥା କହିବି ତାହା କମ୍ ସତ ନୁହେଁ, ହେଲେ ଏତେ ଆଶ୍ଚର୍ଯ୍ୟଜନକ ନୁହେଁ । କିନ୍ତୁ ତା’ର ପ୍ରତି ଅକ୍ଷର ସତ୍ୟ । ଏବେ ମନଦେଇ ଶୁଣ ।”

“ମୋ ଅଣଜେଜେବାପା ଆମ ଗାଁରେ ସବୁଠୁ ବଡ଼ିଆ କୃଷୀ ଥିଲେ । ତାଙ୍କର ଚେହେରା ଯେମିତି ବଡ଼ିଆ, ଜ୍ଞାନ ଓ ବିଚାରବୁଦ୍ଧି ବି ସେମିତି ବଡ଼ିଆ ଥିଲା । ତାଙ୍କୁ ଦେଖିବା ଲୋକ ପ୍ରଶଂସା ନ କରି ରହିପାରୁ ନ ଥିଲା । ସେ ଆମ ଜାତିର ବେହେରା ଓ ଗାଁର ପ୍ରଧାନ ଥିଲେ । ସେ ସବୁବେଳେ ଗରିବଙ୍କ ପାଇଁ ଲଢୁଥିଲେ । ସଭା-ସମିତିରେ ତାଙ୍କୁ ପ୍ରଥମେ ସବୁଠାରୁ ବଡ଼ ଆସନ ଦିଆ ହେଉଥିଲା । ତାଙ୍କର ଅନେକ ଭଲ ଗୁଣ ଥିଲା । ତାଙ୍କୁ ସମସ୍ତେ ଭଲ ପାଉଥିଲେ । ନିତି ଅନେକ ଦୁଃଖୀରଙ୍କୀ ତାଙ୍କ ପାଖକୁ ଆସୁଥିଲେ ଓ ସେ ସମସ୍ତଙ୍କ ଅଭାବ ପୂରଣ କରୁଥିଲେ । ଯେ ଯାହା ମାଗୁଥିଲା, ତାକୁ ତାହା ଦେଉଥିଲେ । ହଳ ନ ଥିବା ଲୋକକୁ ହଳ ଦେଉଥିଲେ । ମୂଲିଆ ଅଭାବରୁ କେହି ଫସଲ ଅମଳ ନ କରି ପାରୁଥିଲେ ତାକୁ

ମୂଲିଆ ଦେଉଥିଲେ । ସେ ଫସଲ ଅମଲ କରୁଥିଲାବେଳେ ଯେ ପହଞ୍ଚୁଥିଲା ତାଙ୍କୁ ଫସଲ ବାଣ୍ଟି ଦେଉଥିଲେ । ସମାଜରେ ଯେତେ କଳଗୋଳ ହେଉଥିଲା ତାକୁ ସବୁ ସେ ସମାଧାନ କରି ଦେଉଥିଲେ । ତାଙ୍କ କଥାରୁ ବାହାରି ଯିବାକୁ କାହାରି ଗୃହା ନ ଥିଲା । ପ୍ରକୃତରେ ବଡ଼ ବଡ଼ ହାକିମଙ୍କ ହୁକୁମ ପରି ତାଙ୍କ ହୁକୁମକୁ ସମସ୍ତେ ଖାତିର କରୁଥିଲେ । ଦୁଷ୍ଟ ଲୋକେ ତାଙ୍କୁ ଯମ ପରି ଡରୁଥିଲେ ।



ତାଙ୍କର ଖ୍ୟାମ ପରି ବିରାଟ ଚେହେରା ଦେଖିଲେ ତାଙ୍କୁ କେହି ଅସନ୍ତୁଷ୍ଟ କରିବାକୁ ସାହସ କରୁ ନ ଥିଲେ ।"

"ସତ ଚୌଧୁରୀ, ସତ" ବଣିଆ କହିଲା ।

"ବେଶ୍, ଥରେ ଆମ ଗାଁରେ ବଡ଼ ଦୁର୍ଭିକ୍ଷ ପଡ଼ିଲା । ମୋଟେ ବର୍ଷା ହେଲା ନାହିଁ । କୂଅ-ପୋଖରୀ ନଈ ନାଳ ସବୁ ଶୁଖିଗଲା ।

ଗଛପତ୍ର ଝାଉଁଳିଗଲା । ଘାସପତ୍ର ଅଭାବରୁ ଗୋରୁଗାଈ ସବୁ ଖାଇବାକୁ ପାଇଲେ ନାହିଁ । ପଶୁ ପକ୍ଷୀ ହଜାର ହଜାର ସଂଖ୍ୟାରେ ଗୁଡ଼ାଏ ପଡ଼ି ମଲେ । ମୋ ଅଣଜେଜେବାପା ଲୋକଙ୍କୁ ଧାନ ଗୁଡ଼ାଳ ବାଣ୍ଟିଲେ । ଯେତେବେଳେ ଦେଖିଲେ କୋଠିରେ ଆଉ ଧାନ ନାହିଁ, ତହୁଁ ଲୋକଙ୍କୁ ରକ୍ଷା କରିବାକୁ ବିଚାର କଲେ ଓ ଚାଷୀମାନଙ୍କୁ ଡକାଇ କହିଲେ, "ଭାଇମାନେ, ଇନ୍ଦ୍ରରାଜା ଆମ ଉପରେ ରାଗିଛନ୍ତି । ବର୍ଷା କରୁ ନାହାନ୍ତି । ଆମେ ଆଗରୁ କିଛି ବାଟ ନ କଲେ ଭୋକ ଉପାସରେ ମରିଯିବା । ତୁମେମାନେ ଯଦି ମୋ କଥା ମାନିବ, ମହରଗ ଯେତେକାଳ ପଡ଼ିଲେ ସୁଦ୍ଧା ମୁଁ ତୁମମାନଙ୍କୁ ଖାଇବା ପାଇଁ ଯୋଗାଇ ଦେବ । ମୁଁ ଆଉ ବେଶିକିଛି କହୁ ନାହିଁ । ତୁମେମାନେ ତୁମ ଜମି ସବୁ ମୋତେ ଛ'ମାସ ପାଇଁ ଦିଅ, ମୁଁ ସେଥିରେ ଫସଲ କରାଇ ଦେବ ।" "ହଁ, ହଁ, ସେଇଆ, ସେଇଆ ହେଉ" ସବୁ ଚାଷୀଏ ଏକାବେଳକେ କହିଲେ । ତା'ପରେ ଆମ ବଡ଼ବଡ଼େ କଥା କଥାକେ ଚାଷୀମାନଙ୍କର ହଜାର ହଜାର ମାଣ ଜମି ତାଙ୍କ ମୁଣ୍ଡରେ ନେଇଗଲେ ।

ଏ ଅସମ୍ଭବ କଥାରେ ମନେ ମନେ ହସି ବଣିଆ କହିଲା, "ସତ ଚୌଧୁରୀ, ସତ ।"

"ତା'ପରେ ଆମ ବଡ଼ବଡ଼େ ଜମିବାଡ଼ିସହ ସାରା ଗାଁଟାକୁ ମୁଣ୍ଡାଇ ବର୍ଷା ଖୋଜି ବାହାରିଲେ । ଯେଉଁଠି ବର୍ଷା ହେଲା, ସେଠାକୁ ଗାଁଟା ମୁଣ୍ଡାଇ ନେଲେ । ସବୁ ବର୍ଷାପାଣିତକ ଆଣିଲେ । ବିଲ, ବାଡ଼, କୂଅ, ପୋଖରୀ, ନଈ, ନାଳ ସେଥିରେ ଯାହାଥିଲା, ସବୁ ପାଣିରେ ପୂରିଗଲା । ଏହିପରି ପାଣି କରାଇ ସେ ଚାଷୀମାନଙ୍କୁ ତାଙ୍କ ଜମିମାନ ଫସଲ କରିବାକୁ କହିଲେ । ପୂରା ଛ'ମାସ କାଳ

ମୋ ଅଣଜେଜେବାପା ମେଘ ପଛେ ପଛେ ଗୋଡ଼ାଇ ନାନା ଦେଶ ବୁଲି ବର୍ଷାପାଣି ସଂଗ୍ରହ କଲେ । ଚଷାମାନେ ଜମିରେ ହଳ କରି ଫସଲ ବୁଣିଲେ । ସେ ବର୍ଷ ବଢ଼ିଆ କ୍ଷେତ ହେଲା । ଭଲ ପାଣି ପାଇଥିବାରୁ ଗହମ, ମକା ଗଛ ସବୁ ମେଘ ଉଚ୍ଚା ବଢ଼ିଗଲା ।"

"ସତ ଚୌଧୁରୀ ସତ" ବଣିଆ କହିଲା ।

"ଆମ ବଡ଼ବଡ଼େ ଗାଁ ଓ ଗାଁବାଲାଙ୍କୁ ମୁଣ୍ଡାଇ ଦୁନିଆସାରା ବୁଲି ନିଜ ଦେଶକୁ ଫେରିଲେ । ଗାଁ ଯେଉଁଠି ଯେପରି ଥିଲା ସେଇଠି ରଖିଲେ । ସେ ବର୍ଷ ବଢ଼ିଆ ଫସଲ ଅମଳ ହେଲା । ସେ ବର୍ଷ ଗହମ ଓ ମକାଦାନା ସବୁ ଖୁବ୍ ବଡ଼ ହୋଇଗଲା । ଗହମଟାମାନ ତୁମ ମୁଣ୍ଡ ପରି ବଡ଼ ବଡ଼ ହୋଇଥିଲା ।"

"ସତ ଚୌଧୁରୀ ସତ" ବଣିଆ କହିଲା ।

"ଆଚ୍ଛା, ଫସଲ ଅମଳ କରିସାରି ଦେଖିଲାବେଳକୁ କୋଠିରେ ଆଉ ଜାଗା ନାହିଁ । ଦେଶର ଚାରିଆଡ଼ୁ ଏ ଅପୂର୍ବ ଫସଲ କିଣିବାକୁ ଲୋକ ଆସିଲେ । ସେ ବର୍ଷ ଆମର ବହୁତ ଆୟ ହୋଇଥିଲା । ଆମ ବଡ଼ବଡ଼େ ହଜାର ହଜାର ଟଙ୍କା ଗରିବ ଲୋକଙ୍କୁ ବାଣ୍ଟି ଦେଲେ । ବହୁ ଲୋକଙ୍କୁ ଫସଲ ମାଗଣା ଦେଲେ ଓ ସୁଝିପାରିବା ଲୋକ ବି ଶସ୍ତାରେ ନେଲେ ।"

ଗପ ଏତିକ ହେଲାବେଳକୁ ଦୋକାନ ପାଖକୁ ସେମାନେ ଆସି ଯାଇଥିଲେ । ଚଷା ତା ଗପ କହି ଚାଲିଛି ।

"ସେତେବେଳେ ତୁମ ଅଣଜେଜେବାପା ବଡ଼ ଗରିବ ଥିଲେ । ଖାଇବାକୁ ପାଉ ନ ଥିଲେ । ତାଙ୍କ ଦୁଃଖ ସହି ନ ପାରି ତାଙ୍କୁ ଆମ ବଡ଼ବଡ଼େ ମାପୁଣି କାମରେ ରଖିଥିଲେ ।"

"ସତ ଚୌଧୁରୀ ସତ" ବଣିଆ କହିଲା ।

"ତୁମ ବଡ଼ବଡ଼େ ଧନ ଗତ ଆମ ମାପୁଣି କାମରେ ଲଗିଥା'ନ୍ତି । ତାଙ୍କୁ ଦେଖିଲେ ବଡ଼ ବଇକଳ ଲାଗେ । ସେ ଟିକେ ନବୁଝିଆ ଥିବାରୁ ଗଣାଗଣିରେ ବେଳେ ବେଳେ ଭୁଲ କରନ୍ତି । ସେଥିଲାଗି ତାଙ୍କୁ ଆମ ବଡ଼ବଡ଼େଙ୍କଠାରୁ ମାଡ଼ ଓ ଗାଳ ସହିବାକୁ ପଡ଼େ ।"

"ସତ ଚୌଧୁରୀ, ସତ" ବଣିଆ କହିଲା ।

ଏସମୟକୁ ଚଷା ଯେଉଁ ମହାଜନଠାରୁ କରଜ ଆଣିଥିଲା, ତା ଦୋକାନରେ ସେମାନେ ପହଞ୍ଚି ଗଲେଣି । ମହାଜନକୁ ଗଦିରେ ବସିଥିବାର ଦେଖି ସେ ଦୁହେଁ ତାକୁ ନମସ୍କାର କରି ସେଇ ଦୋକାନରେ ବସିଲେ । ଚଷା ମହାଜନଙ୍କୁ ପାଟି ନ ଫିଟାଇ ତା ଗପ ଚଳେଇଲା, "ବୁଝିଲ ସାହୁ ଭାଇ, ଯେତେବେଳେ ଆମ ଅଣଜେଜେବାପା ବଳକା ଫସଲ ସବୁ ବିକ ସାରିଲେ ତୁମ ଅଣ-ଜେଜେବାପାଙ୍କୁ ମାପୁଣି କାମରୁ ବଦାୟ ଦେଲେ । ସେ ଗୃହକଣରୁ ବାହାରି ଗଲାବେଳେ ତୁମ ବୁଢ଼ା ଆମ ବୁଢ଼ାଙ୍କୁ ଶହେଟଙ୍କା କରଜ ମାଗିଲେ । ତାଙ୍କୁ ଖୁସିରେ ସେ କରଜ ଦେଲେ ।"

"ସତ ଚୌଧୁରୀ, ସତ" ବଣିଆ କହିଲା ।

ଚଷା ବଡ଼ପାଟିରେ ମହାଜନଙ୍କୁ ଶୁଣାଇ କହିଲା, "ତା'ପରେ ତୁମ ବଡ଼ବଡ଼େ ସେ ଋଣ ପରିଶୋଧ କରି ନାହାନ୍ତି ।"

"ସତ ଚୌଧୁରୀ, ସତ" ବଣିଆ କହିଲା ।

"ସେ ଋଣ ତୁମ ଜେଜେବାପା ଶୁଝି ନାହାନ୍ତି, କିବା ତୁମ ବାପା ବି ଶୁଝିଲେ ନାହିଁ, ତୁମେ ବି ଆଜଯାଏ ଶୁଝି ପାରିନାହଁ ।"

"ସତ ଚୌଧୁରୀ, ସତ" ବଣିଆ କହିଲା ।

"ବର୍ତ୍ତମାନ ସେ ଟଙ୍କା ସୁଧ ମୂଳ ହିସାବ କଲେ ପୂର୍ବ ହଜାରେ ଟଙ୍କା ହେବ । ତୁମେ ସେ ଟଙ୍କା ମୋତେ ପରିଶୋଧ କରିବାର ହକ୍ ହେଉଛି" ଚଷା କହିଲା ।

"ସତ ଚୌଧୁରୀ, ସତ" ବଣିଆ କହିଲା ।

"ଏବେ ତୁମେ ଯେଉଁ ଋଣ ନେଇଥିବା ସ୍ୱୀକାର କଲ, ତାହା ମୋ ମହାଜନଙ୍କୁ ପରିଶୋଧ କରିଦିଅ, ଏତିକ ମୋର ଅନୁରୋଧ । ମୋର ଜମିତକ ତାଙ୍କଠୁ ମୁକୁଳି ଯାଉ ।"

ଏ କଥାରେ ବଣିଆର ବୁଦ୍ଧି ବଣା ହୋଇଗଲା । ଏବେ ସେ ମହାଅଡୁଆରେ ପଡ଼ିଗଲା । ଏହା ଯଦି ତୁଚ୍ଛା ଗପ ବୋଲି କହେ, ତେବେ ପୂର୍ବ ବାଜି ଅନୁସାରେ ହଜାରେ ଟଙ୍କା ଗଣିବାକୁ ହେବ । ନୋହିଲେ ନିଜ ମୁହଁରେ ସ୍ୱୀକାର କରିଥିବା ମୁତାବକ ସେତିକ ଦେବାକୁ ହେବ । ବିଚ୍ରାରି ଆଉ କିଛି ଉପାୟ ନ ଦେଖି କାନମୋଡ଼ି ହୋଇ ମହାଜନକୁ ଟଙ୍କା ଶୁଝିଲା ।

ଚଷା ଋଣରୁ ମୁକୁଳିଲା ଓ ବଣିଆ ବିଚ୍ରାରି ନିଜ ବୋକାମି ଯୋଗୁ ଖୁବ୍ ଠାକେ ଖାଇ ଘରକୁ ଫେରିଲା ।

# ଜଞ୍ଜାଳ ନଗରୀ କଥା

ଅଜାଣା ମୁଲକରେ ଜଞ୍ଜାଳ ନଗରୀ ଗୋଟିଏ ଅତି ଚମତ୍କାର ସହର । ସେ ସହରର ଲୋକେ ଯେମିତି ସିଆଣିଆ ସେମିତି ଚାଲାକ, ଚତୁର । ସେମାନେ ବୁଦ୍ଧିବିଦ୍ୟାରେ ବେଶ୍ ଜଣାଶୁଣା ଥିଲେ । ତାଙ୍କ ପିଲାଙ୍କୁ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନିପୁର କଥା ଜଣାଥିଲା । ସେ ସହର ପିଲାଏ କଳକବ୍‌ଜାର ଜିନିଷରେ ଖେଳ ଖେଳୁଥିଲେ । ସେଠା ଲୋକେ ବେଶି ଆଇନକାନୁନ ଓ ଅତି ଗହନ ଗୁରୁତ୍ୱ କଥା-ସବୁ ଚର୍ଚ୍ଚା କରୁଥିଲେ । ଯେତେ ବୋକା ଲୋକ ସେ ସହରକୁ ଗଲେ ବି ବହୁତ ବୁଦ୍ଧି ଅକଲ କଥା ଶିଖି ଫେରି ଆସୁଥିଲା । ତା ପାଖ ଆଖ ସହରର ଲୋକ ଆଜିଯାଏ କହନ୍ତି ଯେ ଜଞ୍ଜାଳ ନଗରୀ ଲୋକେ ବହୁତ ମନ୍ତ୍ରତନ୍ତ୍ର ଜାଣନ୍ତି, ସେଠାକୁ ଅଜଣା ବିଦେଶୀ ଲୋକ ଗଲେ ତାକୁ ଛେଳିମେଣ୍ଢା ବା ସେହି ପ୍ରକାର ଜନ୍ତୁ କରି ରଖନ୍ତି । କଥାଟା ପ୍ରକୃତରେ ସତ ନ ହେଲେ ସୁଦ୍ଧା ସେଠା ଲୋକଙ୍କର ଅତି ଅସାଧାରଣ ଜ୍ଞାନଗରିମା ଯୋଗୁ ଏପରି ଜନରବ ବରାବର ରହି ଆସିଛି । ସେମାନେ ବହୁତ ଯୁକ୍ତିତର୍କ ଜାଣିଲେ ବି ସେମାନଙ୍କୁ ସାଧାରଣ ଲୋକ ବ୍ୟବହାର ଜଣା ନ ଥିଲା । ସେମାନଙ୍କର ସେହି ନାଁ ଯୋଗୁ ବାହାର ଦୁନିଆ ଲୋକଙ୍କଠାରୁ ସେ ଦୂରରେ ରହୁଥିଲେ ।

ଥରେ ଜଣେ ଧନୀ ସୌଦାଗର କିଛି ସଉଦା କିଣିବାକୁ ସେ ସହରକୁ ଯାଇଥିଲା । ସେ ସେଠାର ବଡ଼ ବଜାରକୁ ଗଲା । ସେଠି ସବୁ ପ୍ରକାର ଜିନିଷ କିଣାବିକା ହୁଏ । ସେଠାରେ ସେ ପହଞ୍ଚି ଶୁଣିଲା ଯେ, ଜଣେ ଲୋକ ରଡ଼ି କରି କହୁଛି, "ତିନୋଟି ଉପଦେଶକୁ ତିନି ହଜାର ଟଙ୍କା । ମୋ ନାଁ ହୁସିଆର ଖାଁ । ମୁଁ ତିଗଡ଼ମାଳ, ଗଦ୍ୟ, କବିତା ଓ ଉପଦେଶ ବିକେ । ସୌଦାଗର ଏ ଅପୂର୍ବ ପ୍ରଚାର ଓ କାରବାର କଥା ଶୁଣି ବାବା ହୋଇଗଲା । ମନରେ ଭାବିଲା, ଯେ ଏତେ ମୂଲ୍ୟ କହୁଛି, ନିଶ୍ଚୟ ବଡ଼ ବଢ଼ିଆ ଉପଦେଶ ହୋଇଥିବ । ମନରେ ଆଗପଛ ଅନେକ ବିଚାର କରି ଉପଦେଶ କିଣିବାକୁ ଠିକ୍ କଲା । ତହୁଁ ସେ ହୁସିଆର ଖାଁ ପାଖକୁ ଗଲା । ତିନି ହଜାର ଟଙ୍କାର ତିନିଟି ଥଳି ତାକୁ ଦେଇ କହିଲା, "ମହାଶୟ, ଏଇ ଟଙ୍କା ନିଅନ୍ତୁ ଓ ତିନୋଟି ଉପଦେଶ ମୋତେ ଦିଅନ୍ତୁ ।" ହୁସିଆର ଖାଁ ସବୁ ଥଳି ନେଲା । ଟଙ୍କା ଗଣିଲା । ତାକୁ ସାଇତି ରଖିଲା । ମହାଜନକୁ ଅଣଆଡ଼ୁଆ ଜାଗାକୁ ନେଇ ତା କାନରେ ଗୁନ୍ ଗୁନ୍ କରି କହିଲା, "ପୂଜାହାରୀଙ୍କୁ କେବେ ବିଶ୍ୱାସ କରିବ ନାହିଁ । କୌଣସି ବନ୍ଧୁକୁ ବିଶ୍ୱାସ କରିବା ଠିକ୍ ନୁହେଁ । ଏକମାତ୍ର ଈଶ୍ୱରଙ୍କୁ ବିଶ୍ୱାସ କରିବା ଭଲ ।" ମହାଜନ ଭାବିଲା ଯେ, ଏଇ ସାମାନ୍ୟ କଥାକୁ ବେଶିଗୁଡ଼େ ଟଙ୍କା ନେଇଗଲା । ସେ ବଡ଼ ହତାଶ ହୋଇଗଲା । ତା ମୁହଁ ଫିକା ପଡ଼ିଗଲା । ହୁସିଆର ଖାଁ ଏହାଦେଖି କହିଲା, "ମହାଜନ ଭାଇ, କାହାରିକୁ ଠକିବା, ଭଣ୍ଡିବା ମୋର ଉଦ୍ଦେଶ୍ୟ ନୁହେଁ । ମୋ କଥାର ସତ ମିଛ ତୁମ ଜୀବନରେ ଦିନେ ବୁଝିପାରିବ । ତୁମେ ସେତେବେଳେ ମୋତେ ନିଶ୍ଚେ ବାହାବା କରିବ । ତୁମେ ଭାବନାହିଁ ଯେ, ମୁଁ ତୁମକୁ ଠକି ଦେଇଛି । ହଉ, ମୁଁ ଏବେ ତୁମକୁ ଆମ୍ବ, କମଳା, ପିଜୁଳି, ପଣସ, ଡାଳିମ୍ବ ଓ ଆତ ମଞ୍ଜି ଦେଉଛି । ଏହାକୁ

ଲଗାଇଦେବା ସଙ୍ଗେ ସଙ୍ଗେ ଗଛ ହେବ ଓ ସଙ୍ଗେ ଫଳ ଫଳି ପାରିବ । ତା'ପରେ "ମିଳେଇ ଯା" କହିଲେ ଗଛସବୁ ମିଳେଇ-ଯିବ ଓ ମଞ୍ଜି ସବୁକୁ ଗୋଟାଇ ଆଣି ରଖିବ ।" କମ୍‌ଅକଲ (ସେ ସୌଦାଗର ନାମ) ଏପରି ଅପୂର୍ବ ମଞ୍ଜି ପାଇ ଭାରି ଖୁସି ହେଲା । ଭାବିଲା ତା ପଇସା ପାଇଁ ସେ ଢେର୍ ଜିନିଷ ପାଇଗଲା ।

ସୌଦାଗର ସେ ସହରରୁ କାମ ସାରି ଘରକୁ ଫେରିଗଲା । ବୁଢ଼ିଆର ଖଁାଠାରୁ ଆଣିଥିବା ବିଚିତ୍ର ମଞ୍ଜିସବୁ ଆଗ ନିଜ ପୂଜାହାରୀଙ୍କୁ ଦେଖାଇଲା । ଘର ଆଗରେ ଥିବା ପଡ଼ିଆରେ ମଞ୍ଜି ସବୁ ଲଗା ହେଲା । ସଙ୍ଗେ ସଙ୍ଗେ ଗଛ ହେଲା, ବଢ଼ିଲା, ଫୁଲ କଷି ଧରିଲା, ଫଳ ଫଳିଲା । ସୌଦାଗର ଓ ପୂଜାହାରୀ ପେଟଭରି ଫଳ ଖାଇଲେ । ଯାହା ବଳିଲା ବନ୍ଧୁବାନ୍ଧବଙ୍କୁ ବାଣ୍ଟିଦେଲେ । ତା'ପରେ "ମିଳେଇ ଯା" କହିଲାରୁ ଗଛସବୁ ଉଭେଇଗଲା । ପୂଜାହାରୀଟି ଭଲ ଲୋକ ନ ଥିଲା । ସେ ଏ ମହାଜନଘରୁ ଜିନିଷପତ୍ର ଚୋରାଇ ନେଇ ଆଉଜଣେ ମହାଜନକୁ ଦିଏ । ତାହାର ନାମ 'କମ୍‌ଅଙ୍କ' । ଏହି କମ୍‌ଅଙ୍କର କମ୍‌ଅକଲ ସଙ୍ଗେ ଘନିଷ୍ଠ ଭାବ ଥିଲା । କମ୍‌ଅକଲ ଥରେ ଘରୁ କୁଆଡ଼େ ଯାଇଥିଲା । ପୂଜାହାରୀ କମ୍‌ଅଙ୍କଙ୍କୁ ଡକାଇ କହିଲା, "ସାଥୀ, କ'ଣ କରିବା ? କମ୍‌ଅକଲ ମଞ୍ଜି ଆଣି ଅଇଲା ଦିନୁ ଆଉ ବିଦେଶ ଯିବାକୁ ମନ କରୁ ନାହାନ୍ତି । ଘରୁ ଦଣ୍ଡେ କୁଆଡ଼େ ଯାଉ ନାହାନ୍ତି । ସେ ଘରେ ରହିବାରୁ ମୁଁ ଘରୁ କିଛି ନେଇପାରୁ ନାହିଁ କିମ୍ବା ତୁମକୁ ଦେଇପାରୁ ନାହିଁ । ତୁମେ ତ ଜାଣିଚ, କେତେ ଫୁସୁଲେଇ ତାଙ୍କୁ ଜଞ୍ଜାଳ ନଗରକୁ ସେଥର ପଠାଇଥିଲି । ମୁଁ ଭାବିଥିଲି ଓ ବଡ଼ ଆଶା କରିଥିଲି ଯେ, ସେ ତେଣେ ଢେର କିମ୍ବା ମେଣ୍ଢା ହୋଇ ରହିବେ । କିନ୍ତୁ ଦୁର୍ଭାଗ୍ୟକୁ ଫେରି ଆସିଲେ ଓ ଆମ ମଉଜମଜଲିସ୍‌ରେ ବାଧା ଦେଲେ । ଏବେ

ମୋତେ ବଡ଼ ସନ୍ଦେହ କରୁଛନ୍ତି ଓ ମୋତେ ଖୁବ୍ ଜଗୁଛନ୍ତି । ମୋର ଇଚ୍ଛା ତାଙ୍କୁ ପଟାଏ ଦିଅନ୍ତେ । ତୁମେ ଟିକେ ସାହାଯ୍ୟ କରିବ କି ? କମ୍‌ଅଞ୍ଚ ତାକୁ ପୂରା ସାହାଯ୍ୟ ଦେବାକୁ ପଣ କଲା । ତହୁଁ ପୂଜାହାରୀ ତାକୁ ସବୁ ଫନ୍ଦି ବତାଇଲା । କମ୍‌ଅଞ୍ଚ ପୂଜାହାରୀ କଥାରେ ଗୋଟାପଣେ ରାଜି ହୋଇଗଲା ।

କିଛି ସମୟ ପରେ କମ୍‌ଅକଲ ଘରକୁ ଫେରିଲା । ଦେଖିଲା, ତା'ର ସାଙ୍ଗ କମ୍‌ଅଞ୍ଚ ତାକୁ ଅପେକ୍ଷା କରି ରହିଛି । ସରଳ ବିଶ୍ୱାସୀ ମହାଜନ ସେ ବିଶ୍ୱାସଘାତକ ସାଥୀକୁ ଦେଖି ଅତି ଖୁସି ହେଲା । ସେ ଦୁହେଁ ବସି କେତେ ଗପସପ ହେଲେ, ଖିଆପିଆ ସାରିଲେ । ହଠାତ୍ ମନେ ପଡ଼ିଗଲାଭଳି କମ୍‌ଅଞ୍ଚ କହିଲା, "ସାଙ୍ଗ, ଲୋକେ କହୁଛନ୍ତି, ତୁମେ କୁଆଡ଼େ ଗୁଡ଼େ ଅପୂର୍ବ ମଞ୍ଜି ଆଣିଛ । ସେ କଥା କ'ଣ ସତ ? ସତରେ ସେଇଲାଗେ ଗଛ ହୋଇଯାଉଛି । ସେଦିନ ତୁମେ ଯେଉଁସବୁ ଫଳ ପଠାଇଥିଲ, ସେ ସବୁ ତୁମରି ମଞ୍ଜି ଗଛର ଫଳ କି ? ମୁଁ ଏହା ତିଳେ ହେଲେ ବିଶ୍ୱାସ କରିପାରୁ ନାହିଁ । ଏହା ତ ଏକ ନିପଟ ଅସମ୍ଭବ କଥା । ବିଚରା ମହାଜନ ତା ମଞ୍ଜିରେ ବଡ଼ ଭରସା ରଖି ଚଟ୍‌କରି କହିଲା, "ତୁମେ କ'ଣ ଭାବିଛ ମୁଁ ଏପରି ମିଛ କଥାଟା ପ୍ରଚାର କରୁଛି ।" କମ୍‌ଅଞ୍ଚ ମନ ମାରି କହିଲା, "ତୁମ କଥାରେ ମୁଁ ତ ତିଳେ ଅବିଶ୍ୱାସ କରେ ନାହିଁ । ତୁମ କଥା ସତ ହୋଇପାରେ; କିନ୍ତୁ ହେଲେ ମନକୁ ଆଦୌ ପାଉନାହିଁ । ଦୁନିଆରେ ଏପରି ମଞ୍ଜି କାହୁଁ ମିଳିବ ? ଅସମ୍ଭବ, ଘୋର ଅସମ୍ଭବ । ଆଚ୍ଛା, ତୁମେ ମୋ ଆଖି ଆଗରେ ସେ ମଞ୍ଜି ଲଗାଅ, ଯଦି ଗଛ ହେବ, ମୁଁ ଶପଥ କରି, ନିଯ୍ମ କରି, ତୁମ ରାଣ ଦେଇ କହୁଛି, ତୁମେ ମୋ ଘରେ ଯେଉଁ ଜିନିଷରେ ଆଗ ହାତ ଦେବ ମୁଁ ସେ ଜିନିଷ ତୁମକୁ ଛାଡ଼ିଦେବି । ନାହିଁ ଯଦି ଗଛ ନ

ହୁଏ, ତୁମ ଘରର ଯେଉଁ ଜନଷରେ ମୁଁ ଆଗ ହାତ ମାରିବ, ତାହା ତୁମେ ମୋତେ ଛାଡ଼ ଦେବ କ ?" "ନିଶ୍ଚୟ, ନିଶ୍ଚୟ, ମୁଁ ତୁମ କଥାରେ ପୂର୍ବ ରାଜ।" କମ୍‌ଅକଲ ଚିତ୍କାର କର ଘର ଭିତରକୁ ପଶିଗଲ। ଜଞ୍ଜାଳ ନଗରରୁ ଆଣିଥିବା ମଞ୍ଜି ପୂଜାହାରିକୁ ମାଗିଲ। ବସ୍ଥିର ମନେ ମନେ ଭାର ଖୁସି। ମନେ ମନେ କହୁଛି ଖାଉଛୁ ଯେ ବନ୍ଧୁ କମ୍‌ଅକ୍କଲୁ ମଞ୍ଜିର କରାମତି ଦେଖାଇ କେତେ ବାହାଦୁର ପାଇବ। ପୂଜାହାରି ତାଙ୍କୁ ମଞ୍ଜି ଆଣି ଦେଲ। କମ୍-ଅକଲ ତା ସାଥିରେ ଆଖି ଆଗରେ ଭୂଇଁରେ ପୋତିଲ। ଅନେଇ ଅନେଇ ଥକିଲ। ଗଛ ଉଠିଲ ନାହିଁ। ଫଳ ଫଳିବା ଦୂରେ ଥାଉ। କମ୍‌ଅକଲ ଭୟ ଓ ଦୁଃଖରେ ଆବୁକାବୁ ହୋଇଗଲ। ଝଟ୍‌କନା ଯାଇ ମାଟିରୁ ମଞ୍ଜି କାଢ଼ି ଆଣିଲ। ଭଲ କରି ନିରେଖି ଦେଖିଲ। ଚୁପ୍ ଚୁପ୍ କର ମନେ ମନେ କହିଲ, "ହାୟରେ କପାଳ! ଅବିଶ୍ବାସୀଟା କ'ଣ କଲାରେ! ମଞ୍ଜିଗୁଡ଼ାକୁ ସିଝାଇ ଦେଲ! ହାୟ ହାୟ ଭୁଲିଗଲ। ସେତେବେଳେ ହସିଆର ଖାଁ କହିଥିଲ, "ପୂଜାହାରିକୁ ବିଶ୍ବାସ କରିବ ନାହିଁ।" ତା'ପରେ କମ୍‌ଅଙ୍କଲୁ ଡାକ କହିଲ, "ଦେଖିଲଣି ସାଙ୍ଗ, ମଞ୍ଜିଗୁଡ଼ା ସିଝି ଯାଇଛି, ମୁଁ ଏବେ ବାଜିରେ ହାରିଲ। କିନ୍ତୁ ମୋ ଦୋଷରୁ ନୁହେଁ, ଦୟାକରି ତୁମେ ତୁମ ଦାବୀରୁ ମୋତେ ମାଫ୍ ଦେବ କ ?" କମ୍‌ଅଙ୍କ ମୁହଁ ଛୁଞ୍ଚାଡ଼ କହିଲ, "ମୁଁ ତ ଜାଣିଥିଲ ଏଇୟା ହେବ ବୋଲ। ଏପରିକା ମଞ୍ଜି କାହୁଁ ଆସିବ ? ତୁମେ ଭାବିଥିଲ ଠକିଦେବ ବୋଲ। ତୁମେ ମୋତେ ବଡ଼ ଶସ୍ତା ପାଇଥିଲ ? ବୋକା ଭାବିଥିଲ, ଆହା ହା, ଗୁଲ, ଗୁଲ, ତୁମ ଜବାବ ରକ୍ଷାକର। ଆଉ ମୋ ସଙ୍ଗେ ଖେଳ ନାହିଁ।" କମ୍ ଅକଲ ବସ୍ଥିର ଅକଲ ଗୁଡ୍ଡୁମ୍ ହେଲ। ଆଖି ଖୋଷି ହୋଇ ରହିଲ। ତା'ର ଚେତା ପଶିଲ।

ଜାଣିଲା ଯେ ତା'ର ବନ୍ଧୁ ଓ ତା' ପୂଜାହାରୀ ମିଶି ଏତେ ନବରଙ୍ଗ ଏତେ କାଣ୍ଡ ଭିଆଇଛନ୍ତି, ଦୁହେଁଯାକ ଭଣ୍ଡ ଓ ଅବିଶ୍ୱାସୀ । ତା'ର ବାଞ୍ଛ ପୂରଣ ପାଇଁ କମ୍ଅକଲ ପନ୍ଦରଦିନ ସମୟ ମାଗିଲା । କମ୍ଅକ୍ଷ ଆଗ ସେଥିରେ ଆଦୌ ରାଜି ହେଲା ନାହିଁ । ବହୁ ଅନୁନୟ ବିନୟ ହେବାରେ ରାଜି ହେଲା । ମହଲତ ଦେଲା ।

କମ୍ଅକଲ ମସଜିଦ୍‌କୁ ଯାଇ ସେଠି ଧାରଣା ଦେଲା । ଠାକୁରଙ୍କୁ ଜଣାଇଲା, "ହେ ପ୍ରଭୁ ! ମୁଁ ପୂଜାହାରୀକୁ ବିଶ୍ୱାସ କରିଥିଲି, ସେ ମୋତେ ଠକିଛି, ବନ୍ଧୁକୁ ବିଶ୍ୱାସ କଲି । ସେ ବି ଅବିଶ୍ୱାସୀ ହେଲା । ତୁମେ ଏକମାତ୍ର ସହାୟ । ଏବେ ତୁମ ଚରଣରେ ଶରଣ ନେଲି । ରକ୍ଷାକର ପ୍ରଭୁ ।" ସାତଦିନ ସାତରାତି ଅଧିଆ ପଡ଼ିବାରେ ହଠାତ୍ ଶୂନ୍ୟବାଣୀ ହେଲା, "ତୁମେ ଯଥାଶୀଘ୍ର ଜଞ୍ଜାଳ ନଗରୀକୁ ଯାଅ ! ହୁସିଆର ଖାଁର ସାହାଯ୍ୟ ନିଅ ! ସେ ତୁମକୁ ସବୁ ବିପଦରୁ ରକ୍ଷା କରିବ ।"

ସଙ୍ଗେ ସଙ୍ଗେ ସେ ଗୋଟିଏ ଘୋଡ଼ାରେ ଚଢ଼ି ବାହାରିଲା । ସଙ୍ଗରେ ବହୁ ଟଙ୍କା ପଇସା ଓ ମୂଲ୍ୟବାନ୍ ପଥରର ଅଳଙ୍କାର ନେଲା । ପ୍ରାୟ ଦି'ପ୍ରହରକୁ ଯାଇ ସହରରେ ପହଞ୍ଚିଗଲା । ସହର ମୁଣ୍ଡରେ ଯେତେବେଳେ ହୋଇଗଲା, ଘୋଡ଼ାରୁ ଓହ୍ଲାଇ ପଡ଼ିଲା । ଲୋକଗହଳ ଭିତରେ ଘୋଡ଼ାର ଲଗାମ ଧରି ଚାଲି ଚାଲି ସହର ଭିତରକୁ ଗଲା ।

ସେ ଏକ ବଜାର ଭିତରେ ଯାଉଥିଲାବେଳେ ଗୋଟିଏ କଂସେଇ ତାକୁ ଭେଟିଲା । ସେ କଂସେଇ ଘୋଡ଼ା ଉପରେ ହାତ ରଖି ପଚାରିଲା, "ବାଟୋଇ ଭାଇ, ଏହାକୁ କେତେ ଦାମ୍ ନେବ ?" କଂସେଇ କେବଳ ଘୋଡ଼ାର ଦାମ୍ ପଚାରୁଛି ଭାବି କମ୍ଅକଲ କହିଲା, "ଭାଇ, ମୁଁ ଏହାକୁ ଚାରିଶହ ଟଙ୍କାରେ ଦେବି ।"

ନିକମା ଘୋଡ଼ାଟାର ଦାମ୍ ସେ ଖୁବ୍ ବେଶି ଚଢ଼ାଇ କହିଥିଲା। କିନ୍ତୁ ଆଶ୍ଚର୍ଯ୍ୟ କଥା କଂସେଇ ସେଇକ୍ଷଣି ସ୍ତ୍ରଶଦ ଟଙ୍କା ଠଣ୍‌ଠାଣ୍ ଗଣି ଦେଲା। ଘୋଡ଼ାକୁ ତା ଘରକୁ ନେବାକୁ ଧରିଲା। ସେ



ଘୋଡ଼ାକୁ ନେବାକୁ ବାହାରିଲାବେଳେ କମ୍ଅକଲ ତାକୁ ଡାକି କହିଲା, "ରହ ରହ କଂସେଇ ଭାଇ, ମୋ ଟଙ୍କା ସୁନା ଥଳିଟା ମୁଁ ରଖି ନିଏ। ଜିନ୍ କଡ଼ରେ ମୁଁ ଓହଳାଇ ରଖିଛି।" ତହୁଁ କଂସେଇ କହିଲା, "କ'ଣ କହିଲ ବନ୍ଧୁ, ତୁମେ କ'ଣ ଘୋଡ଼ା ସହିତ ସବୁ ଜିନିଷ ମୋତେ ସ୍ତ୍ରଶଦ ଟଙ୍କାକୁ ବିକି ନାହିଁ? ତୁମେ କ'ଣ ସେତେବେଳେ ତୁମ ଥଳି, ଜିନ୍, ଲଗାମ ଓ ପାହାଡ଼ା ପ୍ରଭୃତି ପାଇଁ ଅଲଗା କରି କହିଥିଲ କି?" ରାସ୍ତାରେ ଯାଉଥିବା ବାଟୋଇ-ମାନଙ୍କୁ ଦେଖାଇ କଂସାଇ କହିଲା, "ମୁଁ କ'ଣ ଘୋଡ଼ାସହ ସବୁ

ନେବାରେ ଅନ୍ୟାୟ କଲି କି ?" ବାଟୋଇମାନେ କଂସେଇ ସପକ୍ଷରେ ମତ ଦେବାରୁ ଛାତି ଫୁଲେଇ କଂସେଇ ଘୋଡ଼ା ଓ ଥଳି ପ୍ରଭୃତି ଧରି ତା ଘରକୁ ଗଲା ।

ଏହା କମ୍‌ଅକଲକୁ ବଡ଼ ବାଧିଲା । ସେ ମନ ଦୁଃଖରେ ସହର ଭିତରକୁ ଚାଲିଲା । ଘରେ ନ ପଶୁଣୁ ମୁଣ୍ଡରେ ତା'ର ଛାଲି ବାଜିଲା । ଏ ଅଖାଡ଼ୁଆ ସହରରେ ନ ପଶୁଣୁ ସବୁ ଧନ ହରାଇ ବସିଲା । ନିଜ ପୋଡ଼ା କପାଳକୁ, ଘରୁ ବାହାରିଥିବା ଅଶୁଭ-ବେଳକୁ କେତେ ନିନ୍ଦିଲା । ହୁସିଆର ଖାଁ ଘର ଖୋଜି ଖୋଜି ଗଲା । ଏକ ଗଳିରେ କେତେକ ପିଲା ଖେଳୁଥିବାର ଦେଖିଲା । ସେମାନଙ୍କୁ ହୁସିଆର ଖାଁ ଘରକୁ ବାଟ ପଚାରିଲା । ପିଲାଏ କହିଲେ, "ହୁସିଆର ଖାଁ ଘରକୁ ବାଟ ଦେଖାଇ ଦେଲେ ଆମକୁ କ'ଣ ଦେବ ?" "ଖୁବ୍ ଚୋଡ଼ାଏ ମିଠେଇ ଦେବା" କମ୍‌ଅକଲ କହିଲା । ତହୁଁ ପିଲାଏ ବସିଗଲେ । କିଏ ମାନଚିତ୍ର ବାହାର କଲା, କେହି କମ୍ପାସ୍ ବାହାର କଲା, କେହି କେହି ଗୁନିଆ ଓ ସ୍କେଲ୍ ପ୍ରଭୃତି ବାହାର କଲେ । ସୂର୍ଯ୍ୟ କେଉଁଠି ଅଛନ୍ତି, ପବନ କେଉଁ ଦିଗରୁ ବହୁଛି ସ୍ଥିର କଲେ । ଦିନ, ତିଥି, ବାର, ନକ୍ଷତ୍ର ଓ ରାଶି କେତେ ଗଣାଗଣି କଲେ । କେତେ ପାଠ କୁହାକୁହି ହେଲେ । ଶେଷରେ ବଡ଼ ପାଟିକରି କହିଲେ, "ପାଇଲୁ-ପାଇଲୁ-ପାଇଲୁ" । ମହାଜନକୁ ହୁସିଆର ଖାଁ ଘରକୁ ବାଟେଇ ନେଲେ । ପିଲାମାନେ କେତେ ହରିବୋଲ, କେତେ ଜୟଧ୍ୱନି କରୁଥାନ୍ତି ବାଟସାକ । କମ୍‌ଅକଲ ପିଲାମାନଙ୍କର ବୁଦ୍ଧିବିଦ୍ୟା ଦେଖି ଅବାକ୍ ହେଉଥାଏ । ପିଲାଏ ସତରେ ଯେ ହୁସିଆର ଖାଁ ଘର ନ ଜାଣିଥିଲେ ଏପରି ନୁହେଁ । ସେମାନେ ସବୁ ହୁସିଆର ଖାଁର ପୁଅ ପୁତୁରା ହେବେ । ସେମାନେ ତାଙ୍କ ଜ୍ଞାନଗାରିମା ଦେଖାଇବାକୁ ଏପରି କରୁଥିଲେ ।

ପିଲମାନେ ମହାଜନକୁ ହୁସିଆର ଖାଁ ଘରେ ପହଞ୍ଚାଇ ଦେଇ ତାଙ୍କ ପୁରସ୍କାର ମାଗିଲେ । ମହାଜନ ତାଙ୍କୁ ଟଙ୍କାକର ମିଠେଇ କଣି ଦେଲା । ପିଲାଏ ତାହା ନନେଇ କହିଲେ, "ମହାଶୟ, ଆପଣ ଖୁବ୍ ଚୋଡ଼ାଏ ମିଠେଇ ଦେବାକୁ କହିଥିଲେ, ତାହା ଦିଅନ୍ତୁ, ଆମେ ଅନ୍ୟ କିଛି ଚାହୁଁ ନାହୁଁ ।" ମହାଜନ ଦୋହରେ ମିଠେଇ କଣି ଦେଲା, ସେମାନେ ସେଥିରେ ବୋଧ ହେଲେନ । କ୍ରମେ କ୍ରମେ କମ୍‌ଅକଲ ପଚିଶଟଙ୍କାର ମିଠେଇ ଦେଇ ସନ୍ତୁଷ୍ଟ ହେବାକୁ କେତେ ଗୁହାରି କଲା । ପିଲାଏ କିନ୍ତୁ ସେଇ ଏକ କଥା ଧରିଥାନ୍ତି । ସେମାନେ ପୁଣି କହିଲେ, "ଆମେ କିଛି ନେବୁ ନାହିଁ—ଆମର 'ଖୁବ୍ ଚୋଡ଼ାଏ ମିଠେଇ' ଦରକାର । ଆମକୁ ଆମ ଖୁବ୍ ଚୋଡ଼ାଏ ମିଠେଇ ଦିଅନ୍ତୁ । ଆମେ ସେରେ ନେବୁନ କିବା ମହଣେ ନେବୁନ, କି ଦଶ ଟନ୍ ଦେଲେ ବି ନେବୁନ । 'ଖୁବ୍ ଚୋଡ଼ାଏ' ଦେଲେ ନେବୁ ।" ପିଲଙ୍କ ଅଝଟରେ ଓ ଅସମ୍ଭବ କଥାରେ କମ୍‌ଅକଲ ବ୍ୟତିବ୍ୟସ୍ତ ହୋଇ ପଡ଼ିଲା । ତା'ର କହିବାନୁସାରେ ପିଲଙ୍କ ଦାବି ଠିକ୍ ସତ; କିନ୍ତୁ ସେ ଅବଶ୍ୟ ଏହିପରି ଉଦ୍ଦେଶ୍ୟରେ କହି ନ ଥିଲା ।

ପିଲାଏ 'ଖୁବ୍ ଚୋଡ଼ାଏ ମିଠେଇ, ଖୁବ୍ ଚୋଡ଼ାଏ ମିଠେଇ' ଦିଅ ବୋଲି ଝଗଡ଼ା କରୁଥିଲାବେଳେ ହୁସିଆର ଖାଁ ପହଞ୍ଚିଗଲା । କମ୍‌ଅକଲକୁ ଚିହ୍ନି ନ ପାରି ତା ଘରକୁ ଆଦରରେ ଡାକିନେଲା । ସବୁ ହଇକତ ତା'ଠାରୁ ବୁଝି ହୁସିଆର ଖାଁ ପିଲଙ୍କୁ କହିଲା, "ଶ୍ରେଷ୍ଠ ମହାଶୟଗଣ, ତୁମ୍ଭେମାନେ ଅପେକ୍ଷା କର, ତୁମର ଦାବି ସମାଧାନ କରିଦେବି ।" ହୁସିଆର ଖାଁ ଟଙ୍କାକର ମିଠେଇ ନେଇ ଯେତିକି ପିଲା ସେତିକି ଅସମାନ ଭାଗ କରି ରଖିଦେଲା ଓ କହିଲା, "ପିଲାଏ, ଏଇଯେ ଅଲଗା ଅଲଗା ଭାଗ ମିଠେଇ ଥୁଆ ହୋଇଛି

ଏହାକୁ କ'ଣ କହନ୍ତି କହିଲ ?" ପିଲାଏ କହିଲେ, "ଜାଣିନୁ, ସମସ୍ତେ କହନ୍ତି 'ଚୋଡ଼ାଏ' 'ଚୋଡ଼ାଏ' ମିଠେଇ ।" ତହୁଁ ହୁସିଆର ଖାଁ ପିଲାଙ୍କ ବଡ଼ଗୁଞ୍ଚକୁ କହିଲା, "ଏବେ ତୁମେ ବଡ଼ ଚୋଡ଼ାଏ ମିଠେଇ ନଅ ।" ସେ ପିଲା ଗୋଟିଏ ଭାଗ ନେଲାରୁ ତାକୁ ହୁସିଆର ଖାଁ ପଚାରିଲା, "ତୁମ 'ଖୁବ୍ ଚୋଡ଼ାଏ ମିଠେଇ' ପାଇଲ ?" ପିଲା କହିଲା, "ଆଜ୍ଞା ହଁ" । ତା'ପରେ ସେ ଆଉ ଏକ ପିଲାକୁ ଡାକି 'ବଡ଼ ଚୋଡ଼ାଏ ମିଠେଇ' ନେବାକୁ କହିଲା, ସେ ପିଲାକୁ ଯେଉଁ ଚୋଡ଼ାକ ମିଠେଇ ବେଶି ଦେଖାଗଲା ସେ ତାକୁ ନେଲା । ହୁସିଆର ଖାଁ ତାକୁ ପଚାରିଲା, "ଖୁବ୍ ଚୋଡ଼ାଏ ମିଠେଇ ନେଲ ?" ପିଲା ଉତ୍ତର କଲା "ଆଜ୍ଞା ହଁ" । ଏହିପରି ଗୋଟିକ ପରେ ଗୋଟିଏ ପିଲାକୁ ଡାକି ବଡ଼ ଚୋଡ଼ାଏ ମିଠେଇ ବାଛି ନେବାକୁ କହିଲା । ଏହିପରି ସବୁ ପିଲାଏ ନେଇ ସାରିଲାରୁ ସେମାନଙ୍କୁ କହିଲା, ହୁସିଆର, "ତୁମେମାନେ ଖୁବ୍ ଚୋଡ଼ାଏ ଲେଖା ମିଠେଇ ପାଇଲ । ମୋର ଆଶା, ତୁମେମାନେ ବୋଧ ହେଲଣି । ଏବେ ସ୍କୁଲକୁ ଯାଅ ।" ପିଲାମାନେ ଖୁବ୍ ଚୋଡ଼ାଏ ମିଠେଇ ପାଇଲେ ସିନା, ମାତ୍ର ଭାଗକେ ୫।୭ ପଇସାର ମିଠାଇ ପଡ଼ିଲା । ଏ ବ୍ୟାପାର ତାଙ୍କ ମାଷ୍ଟରଙ୍କ କାନକୁ ଗଲା । ସେ ପିଲାଏ ପଚାଶ ଟଙ୍କାର ମିଠେଇ ହରାଇଥିବାର ଜାଣିଲେ, ପିଲାଙ୍କୁ ତାଙ୍କ ଭୁଲ୍ ଓ ବୋକାମି ଯୋଗୁଁ ବେତମାଡ଼ ଦେଲେ ।

କମ୍‌ଅକଲ କୁଆଡ଼ୁ ଫେରି ଆସିଲା ବୋଲି ହୁସିଆର ଖାଁ ତାକୁ ପଚାରିଲା । କମ୍‌ଅକଲଠାରୁ ସବୁ ହାଲ୍ ହଇକତ୍ ଶୁଣି ସେ କହିଲା, "ବନ୍ଧୁ, ଦୁଃଖ କରନାହିଁ । ଆମେ ଶୀଘ୍ର ସବୁ ସମାଧାନ କରି ଦେବା । ଆଜି ରାତି ଆମ ଘରେ ବିଶ୍ରାମ କର ।" ସକାଳ ହେଲାରୁ

ହୁସିଆର ଖାଁ କଂସେଇ ଦୋକାନକୁ ଗଲା । କହିଲା, "ବନ୍ଧୁ, ତୁମ ଘରେ ଯେତେ ମୁଣ୍ଡ ଅଛି, ଦିଅ । କେତେ ଦାମ୍ ନେବ କୁହ ।" କଂସେଇ ତା ଦୋକାନରେ ଥିବା ଶହେ କଟାମୁଣ୍ଡକୁ ଗଣି ଶହେ ଟଙ୍କା ଦାମ୍ ପଡ଼ିବ କହିଲା । ହୁସିଆର ଖାଁ ଶହେ ଟଙ୍କା ଗଣି ଦେଲା ଓ ଶୀଘ୍ର ସବୁ ମୁଣ୍ଡ ଦେବାକୁ କହିଲା । କଂସେଇ ଶହେଟଙ୍କା ଗଣିନେଇ, କଟାମୁଣ୍ଡ ଶହେଟା ଗଣିଦେଇ ଚାଲିଗଲାବେଳକୁ ହୁସିଆର ଖାଁ ତାକୁ ଡାକି କହିଲା, "ରହ ରହ ଭାଇ, ମୋତେ ଠକିଦେଇ ଯାଉଛ କୁଆଡ଼େ ? ତୁମ ଘରେ ଯେତେ ମୁଣ୍ଡ ଅଛି ସବୁ ମୋତେ ଦେଲଣି କି ? ସେ ଗୁହାଳେ କେତେ ଛେଳି, ମେଣ୍ଢା, ଗୋରୁ ଗାଈ ଥିବାର ଦେଖାଯାଉଛନ୍ତି । ତାଙ୍କ ମୁଣ୍ଡ ଆଣିଦିଅ । କଂସେଇ ଅନ୍ୟ ଉପାୟ ନ ଦେଖି ସେମାନଙ୍କ ମୁଣ୍ଡ କାଟିକରି ଦେଲା । ହୁସିଆର ଖାଁ ସେତିକରେ ବୋଧ ନ ହୋଇ ପୁଣି କହିଲା, "ସାଥୀ, ମୁଁ ଏଇନେ ଦେଖିଛି ତୁମ ଝରକାଠି କଏ ଜଣେ ଉଣ୍ଡୁଥିଲା । ସେ ବୋଧେ ତୁମର ଝିଅ । ଘରେ ଗୋଟିଏ ପିଲାର କାନ୍ଦଣା ଶୁଭୁଛି । ସେଇଟି ନିଶ୍ଚୟ ତୁମର ପିଲା । ତୁମ ସ୍ତ୍ରୀ ନିଶ୍ଚୟ ଘରେ ଥିବେ ଏଥିରେ ସନ୍ଦେହ ନାହିଁ । ସେମାନଙ୍କର ନିଶ୍ଚୟ ମୁଣ୍ଡ ଅଛି, ଦୟାକରି ଶୀଘ୍ର ସେମାନଙ୍କ ମୁଣ୍ଡ ଆଣି ଦିଅ । ସେମାନଙ୍କ ମୁଣ୍ଡ ତୁମେ ମୋତେ ବିକି ସାରିଛ । ଏ କଥାରେ କଂସେଇର ମୁଣ୍ଡ ଘୂରିଗଲା । ସେ ହୁସିଆର ଖାଁର ଗୋଡ଼ ତଳେ ପଡ଼ିଯାଇ ସେମାନଙ୍କ ପ୍ରାଣଭିକ୍ଷା ମାଗିଲା । ହୁସିଆର ଖାଁ ରଡ଼ିକରି କହିଲା, "ସଇତାନ, ତୁମକୁ କ୍ଷମା ଦେବାର ନୁହେଁ । ତୁମକୁ କ୍ଷମା କରିପାରେ ଯଦି କାଲି ମୋ ବନ୍ଧୁଠାରୁ ନେଇଥିବା ଘୋଡ଼ା, ଟଙ୍କା, ସୁନାଥାଳି ପ୍ରଭୃତି ଫେରାଇଦେବ ଓ ତୁମର ଏ ଖରାପ ଆଚରଣ ଯୋଗୁଁ ହଜାରେ ଟଙ୍କା ଜୋରିମନା ଦେବ ।" କଂସେଇ ହୁସିଆର ଖାଁର

ଦାବି ପୂରଣ କଲା । ନିଜ ପରିବାରକୁ ମରଣମୁଖରୁ ରକ୍ଷାକରି ସେ ଧନ୍ୟ ମନେକଲା ।

ତୁସିଆର ଖାଁ କଂସେଇ ଘରୁ ଫେରି କମ୍‌ଅକଲକୁ ତା ଘୋଡ଼ା ଓ ଅନ୍ୟ ସମ୍ପତ୍ତି ଫେରାଇ ଦେଲା । ତାକୁ କହିଲା, "ବନ୍ଧୁ, ତୁମେ ଏଠାରେ ଦିନଦିନ ରୁହ, ତା'ପରେ ତୁମ ଘରକୁ ଯାଇ ସବୁ ଅଡ଼୍ଆ ତୁଟାଇବା । କିନ୍ତୁ ବନ୍ଧୁ, ସାବଧାନ, ନିଜକୁ ଜଗି ବୁଝି ଚଳ । ହାତେ ମାପି ଗୁଖଣ୍ଡେ ଗୁଲିଲେ ବି ଏଠା ଲୋକଙ୍କୁ ପାରିବା କାଠିକର ପାଠ । ତେଣୁ ଭାଇ, ସାବଧାନ ।" କମ୍‌ଅକଲ ତା'ର ଉପଦେଶ ମାନି ଚଳିବାକୁ ମନରେ ବଡ଼ ଆଣ୍ଠ କଲା ।

ତା ପରଦିନ କମ୍‌ଅକଲ ହଳେ ଯୋତା କିଣିବାକୁ ମନ କଲା । ତା ପୁରୁଣା ଯୋତା ଯୋଡ଼ାକ ଅକାମି ହୋଇ ଯାଇଥିଲା । ସେ ମୋଚି ଦୋକାନକୁ ଯାଇ କହିଲା, "ଆଜ୍ଞା, ମୋତେ ହଳେ ଯୋତା ଦିଅ । ତାହା ମୂଲଗୁଲ କରିବା ଲୋଡ଼ା ନାହିଁ । ମୁଁ ତୁମକୁ ଖୁସି କରିଦେବି ।" ତା'ର କହିବାର ମତଲବ ହେଲା ଯେ, ସେ ଠିକ୍ ଦାମ୍‌ଠାରୁ କିଛି ଅଧିକ ଦେବ । ଯୋତା ଦୋକାନୀ ତାକୁ ଅନେକ ପ୍ରକାର ଯୋତା ଦେଖାଇଲା । କମ୍‌ଅକଲ ତା ଗୋଡ଼କୁ କିଛି ହଳେ ଯୋତା ବାଛି ନେଲା । ସେ ଯୋତାର ଯଥାର୍ଥ ମୂଲ୍ୟଠାରୁ ଅଧିକ କରି ତାକୁ ଗୁରିଟଙ୍କା ଦ୍ୟାଇଲା । କିନ୍ତୁ ସେ ତା ଛୁଇଁଲା ନାହିଁ । କ୍ରମେ କ୍ରମେ ବଢ଼ାଇ କମ୍‌ଅକଲ ତାକୁ ପଚିଶଟଙ୍କା ଯାଏ ବି ଦେଲା । ମୋଚି ତା ଗ୍ରହଣ କଲା ନାହିଁ । କେବଳ କହି ଲାଗିଥାଏ, "ଆପଣ ମୋତେ ଖୁସି କରି ଦେବାକୁ କହିଛନ୍ତି । ମୋର ଟଙ୍କାରେ ଲୋଡ଼ା ନାହିଁ । ମୋତେ ଖୁସି କରି ଦିଅନ୍ତୁ । ମୋର ହଜାରେ ଗୁଡ଼ ଲକ୍ଷେ ଟଙ୍କା ଦରକାର ନାହିଁ । ମୋର ଖାଲି "ଖୁସି" ଦରକାର । ଏପରି ମୁସ୍କିଲରେ ପଡ଼ି କମ୍‌ଅକଲ କହିଲା, "ବନ୍ଧୁ, ମୋତେ ଗୋଟିଏ

ଦିନ ସବଗତ ହଅ । ମୋ ବନ୍ଧୁଙ୍କ ସଙ୍ଗେ ବିଚାର କରି ତୁମ ଦାବି ପୂରଣ କରିବ ।" କମ୍‌ଅକଲ ଘରକୁ ଫେରି ହୁସିଆର ଖାଁକୁ ସବୁ ଘଟଣା ଜଣାଇଲା । "କ'ଣ କିପରି କରିବା" ପଚାରିଲା । ସେ କହିଲା, "ଦେଖ କମ୍‌ଅକଲ, ଏଠା ଲୋକ କେଡ଼େ ଚତୁର । ସେମାନେ ଯାହା କହନ୍ତି, ତାହା କରନ୍ତି । ନିଜ କଥା ନିଷ୍ଠେ ରକ୍ଷା କରନ୍ତି । ତୁମେ କେଉଁଦିନ ଏପରି ତର୍କରେ ହୁସିଆରରେ କଥା କହିବା ଶିଖିବ ? ଦେଖ, ଏଠା ଲୋକ କେଡ଼େ ଚତୁର । ପ୍ରତି କଥାକୁ ଓଜନ କରି କାମରେ ଲଗାନ୍ତି । ପ୍ରତିକଥା ମାପିଚୁପି ବୁଝିଶୁଝି ଏଠା ଲୋକଙ୍କ ସଙ୍ଗେ କାରବାର କର । ତୁମର ମୋତି ସଙ୍ଗେ ଏଇ ସ୍ଥିର କଥାଟା ଆଜି ରାତିରେ ସମାଧାନ କରିଦେବା ।"

ରାତି ଅଧରେ ହୁସିଆର ଖାଁ ଓ କମ୍‌ଅକଲ ହାତରେ ଦୁଇଟି ଠେଙ୍ଗା ଧରି ମୋତି ଘରଠାକୁ ଗଲେ । ତା କବାଟରେ ବିଧ ମାରିଲେ ଓ ପାଟିକରି କହିଲେ, "ଓ ଘୋଡ଼ା ବେପାରି, ଶୋଇ ପଡ଼ିଲଣି କି ? ହେ ଘୋଡ଼ାବାଲା ଚେଇଁଛ ଟିକି ?" ତାଙ୍କ ପାଟିରେ ମୋତି ଚମକି ଉଠିଲା, ତାକୁ ସପନ ପରି ଲାଗିଲା । ସତେ ଅବା ତା' ଘର ଡକାୟତ ଚଢ଼ାଉ କଲେ କି ? ମୋତି ପଚାରିଲା, "କିଏ ସେ ?" ହୁସିଆର ଖାଁ ଜୋର୍ ଗଳାରେ କହିଲା, "ଆମେ ରାଜାଘର ଲୋକ, ଆଜି ରାଜାଘରେ ଯୁବରାଜ ଜନ୍ମ ହୋଇଛନ୍ତି । ଆମେ ଏହା ଜଣାଇବାକୁ ହୁକୁମ ପାଇଛୁ । ତୁମେ ଯଦି ରାଜଭକ୍ତ ପ୍ରଜା ହୋଇଥାଅ, ତେବେ ଆଲୁଅକରି ଆନନ୍ଦ ଉତ୍ସବ କର" ମୋତି ଏ ସମ୍ବାଦ ପାଇଁ ରାଜାଘର ଲୋକଙ୍କୁ ଖୁସି କରିବାକୁ ଚେଷ୍ଟା କଲା । କାରଣ ସେମାନେ ତା ସପକ୍ଷରେ ରାଜାଙ୍କୁ ଜଣାଇବେ । ମୋତି ସେମାନଙ୍କୁ ଡାକି କହିଲା, "ଆଜ୍ଞା, ଆସନ୍ତୁ, ବସନ୍ତୁ । କିଛି ଜଳଖିଆ ଖାଆନ୍ତୁ । ଆଜି ଆପଣ ଯେପରି ଖୁସି କରିଛନ୍ତି ତାହା

କହିଲେ ସରିବ ନାହିଁ ।" ହୁସିଆର ଖାଁ ପଚାରିଲା, "ଆମେ ସତରେ ଖୁସି କରିପାରିଛୁ ?" ମୋଚି ଉତ୍ତର କଲା, "ଏଥିରେ ସନ୍ଦେହ ନାହିଁ ।" କମ୍‌ଅକଲ ପଚାରିଲା, "ଆମ ଯୋଗୁଁ ସତରେ ଖୁସି ହେଲ କି ?" ମୋଚି କହିଲା, "ଆଜ୍ଞା, ଆପଣ ନିଶ୍ଚୟ ଖୁସି କରି ପାରିଛନ୍ତି ମୁଁ ଶପଥ କରି କହୁଛି ।" ତହୁଁ ହୁସିଆର ଖାଁ ଓ କମ୍‌ଅକଲ ହସି ହସି କହିଲେ, "ଭାଇ, ଆମକୁ ଚିହ୍ନି ପାରୁଛ ? ଆମେ ରାଜାଙ୍କ ଲୋକ ନୋହୁଁ । ଆମେ ଏବେ ଅଧିକ ପରିଶୋଧ କଲୁଟିକି ? ତୁମେ ଦୁଇଥର 'ଖୁସି' ହୋଇଛ ବୋଲି କହୁଛ । ତୁମର ହକ୍ ପ୍ରାପ୍ୟ ଗୋଟିଏ ଖୁସି ରଖ । ଆଉ ଖୁସି ପାଇଁ ଦୁଇଶହ ଟଙ୍କା ଦିଅ । ମାଗଣାରେ ଦୁଇଥର 'ଖୁସି' ଭୋଗ କରିବା ଠିକ୍ ନୁହେଁ । ମୋଚି ବିଚାର ନିଜ ଜାଲରେ ନିଜେ ପଡ଼ିଲା । ବେଶି ତର୍କ ନ କରି ଦୁଇଶହ ଟଙ୍କା ଗଣି ଦେଲା । ଦୁହେଁ ଟଙ୍କା ବାନ୍ଧି ନେଲେ ଓ ଅପୂର୍ବ ଜଚାପଟରେ ଘରକୁ ଗଲେ ।

ତା ପରଦିନ କମ୍‌ଅକଲ ସହର ଭିତରକୁ ବୁଲି ବାହାରିଲା । ମନେ ମନେ ଠିକ୍ କଲା ଏଠା ଅଖାଡୁଆ ଲୋକଙ୍କ ସଙ୍ଗେ କିଛି କାରବାର କରିବ ନାହିଁ । କେବଳ ବୁଲିବୁଲି ସେଠା ଲୋକଙ୍କ ଚାଲିଚଳଣ ଓ କୋଠାବାଡ଼ିର ଦୃଶ୍ୟ ଦେଖି ଫେରିବ । ଯାଉ ଯାଉ ଗୋଟେ ବଡ଼ ଛକରେ ହାବୁଡ଼ିଲା । ସେଠି ଅନେକ ଲୋକ ଗୋଟିଏ ସୁନ୍ଦରୀ ସ୍ତ୍ରୀ ଲୋକକୁ ଘେରି ରୁଣ୍ଡ ହୋଇଛନ୍ତି । ସେ ସୁନ୍ଦରୀଟି ବଡ଼ ପାଟିରେ ଅଥଚ ମଧୁର ସ୍ୱରରେ କହୁଛି, "ଯଦି କେହି ମୋତେ ଦଶହଜାର ଟଙ୍କା ଦେବ, ମୁଁ ଏ ଛକ ମଝିରେ ସର୍ବସାଧାରଣଙ୍କ ଜାଗାରେ "ଥୋପି" ମାରିଦେବ (ଥୋପି ଏକ ପ୍ରକାର ଅସାଧାରଣ ଅଙ୍ଗଚାଳନା) । ସେ ଦେଶରେ ସ୍ତ୍ରୀ ଲୋକ "ଥୋପି" ମାରିବା ମନା । କାରଣ ସେପରି କରିବା ନିତାନ୍ତ ଗର୍ହିତ ଅଭଦ୍ରତା । କେହି

ତାହା କଲେ ତା'ର ମୁଣ୍ଡକାଟ ହେବ, ଏପରି ଆଇନ୍ ଅଛି । କମ୍‌ଅକଲ ଜାଣେ ଯେ ତାଙ୍କ ରାଜ୍ୟରେ ଏପରି ଆଇନ ଚଳେ । କମ୍‌ଅକଲ ଭାବିଲା, ଯେବେ ସ୍ତ୍ରୀଲୋକଟି କୌତୁକରେ ସେପରି କହୁଛି, କାମରେ କରିବ ନାହିଁ । ସେ ସେଠାରେ ଯେତିକ ଅପେକ୍ଷା କଲା, "ଥୋପି" ମାରିବାରେ ସ୍ତ୍ରୀ ଲୋକର ସେତିକ ଅଧିକ ଆଗ୍ରହ ଦେଖିଲା । ମନେ ମନେ ସ୍ଥିର କଲା ଟଙ୍କା ପଡ଼ିଲେ ପଡ଼ନ୍ତା, ଦେଖନ୍ତା, ମାଇପିଟା କପରି ଏ ଦୁଃସାହସିକ କାର୍ଯ୍ୟ କରିବ । କମ୍‌ଅକଲ ଲୋକଗହଳ ଭିତରୁ କହିଲା, "ଥୋପି ମାର, ମୁଁ ଦଶହଜାର ଟଙ୍କା ଦେବି ।" ଏହା ଶୁଣିବାମାତ୍ରକେ ସେ ସ୍ତ୍ରୀଲୋକ ଭିଡ଼ ମଝିରେ "ଥୋପି" ମାରିଦେଲା । ଲୋକେ ଏହାଦେଖି ଅବାକ୍ । କମ୍‌ଅକଲ ବି ଥରହର । ସେ ମାଇପିଟି ଟଙ୍କା ମାଗିବାରୁ ତାକୁ ହୁସିଆର ଖାଁ ଘରଠାକୁ ସାଙ୍ଗରେ ଆଣିଲା । ତାକୁ ଟଙ୍କା ଦେବାକୁ ଗଣାଗଣି କରୁଥିଲାବେଳେ ଯୋଗକୁ ହୁସିଆର ଖାଁ ସେଠି ପହଞ୍ଚିଗଲା । ଗୁଡ଼େ ଟଙ୍କା କ'ଣ ମାଇପିଟାକୁ ଗଣା ହେଉଛି ଦେଖି ଘଟଣା କ'ଣ ବୋଲି ହୁସିଆର ଖାଁ ପଚାରିଲା । କମ୍‌ଅକଲ ସବୁ କଥା କହିଲାରୁ ହୁସିଆର ଖାଁ କହିଲା, "ଟଙ୍କାଗଣା ଥାଉ, ଚାଲ ଆଗ, ସେ ଥାନ ଦେଖିବା ତା'ର ଟଙ୍କା ହକ୍ ପାଉଛି କ ନାହିଁ ଠିକ୍ କରିବା ।" ହୁସିଆର ଖାଁ ଓ କମ୍‌ଅକଲ ସେ ସ୍ତ୍ରୀଲୋକ ସହ ସେହି ଛକକୁ ଗଲେ । କେଉଁଠି ସେ ନିର୍ଲଜ ଭାବେ "ଥୋପି" ମାରିଥିଲା ସେ ଜାଗା ଚିହ୍ନଟ ନେବାକୁ ହୁସିଆର ଖାଁ ଚାହିଁଲା । ସେ ଜାଗା ଚିହ୍ନଟ ନେବାରେ କିଛି ଭିଡ଼ ହେଲା ନାହିଁ । ଦେଖଣାହାରି ଲୋକ ସେଠୁ ସେତେବେଳଯାଏ ସବୁ ହଟି ନ ଥିଲେ । ସେମାନେ ସବୁ କହିଲେ, "ହୁସିଆର ଖାଁ, ସେ ମାଇପିର ଆଚରଣ ଆମେ ପସନ୍ଦ କରୁନାହୁଁ ସତ; କିନ୍ତୁ ତୁମ ବନ୍ଧୁଙ୍କୁ ବାଜିମାରି ଟଙ୍କା ଦେବାକୁ

ହେବ । ତାଙ୍କୁ କିଏ କହୁଥିଲା ବାଜି ମାରିବାକୁ ।” ହୁସିଆର ଖାଁ କହିଲା, “ମୋର ବନ୍ଧୁ ବାଜିମରି ଟଙ୍କା ଦେବାକୁ ପୂରା ରାଜି ଅଛନ୍ତି । ସେ ଲୋକ ଟଙ୍କା ପାଇବାକୁ ହକଦାର୍ କି ନାହିଁ, ତାହା ମୋର ମନବୋଧ ପାଇଁ ମୁଁ ବୁଝୁଛି । ଆପଣମାନେ ଟିକେ ଧୈର୍ଯ୍ୟ ଧରନ୍ତୁ ।” ତା’ପରେ ସେ ଗୋଟେ ଫିତା ବାହାରି କରି ସେ ଛକର ଚାରିଦଗ ମାପିଲା । ଘଟଣାସ୍ଥଳ ସେ ଛକର ମଝିରେ ନୁହେଁ ବୋଲି ଦେଖା-ଗଲା । ଗୋଟେ ପାଖକୁ ଲାଗି ଯାଇଛି । ତା’ର ବିପରୀତ ପାଖରୁ ଦୂରେଇ ଯାଇଛି । ହୁସିଆର ଖାଁ ସେ ସ୍ତ୍ରୀକୁ ଓ ସେଠି ଜମିଥିବା ଲୋକଙ୍କୁ କହିଲା, “ଦେଖ, ହେ ଭଦ୍ର ମହିଳା, ତୁମେ ଯେ ନିର୍ଲଜ ଆଚରଣ କଲ, ତାହା ଛକ ମଝିରେ କରିବାକୁ କହିଥିଲି । କିନ୍ତୁ ତାହା କରିନାହିଁ । ଏବେ ତ ଆପଣମାନେ ଦେଖିଲେ ସେ ଠିକ୍ ମଝିରେ ଥୋପି ମାରି ନାହାନ୍ତି । ସେ ଏବେ ବାଜିରେ ହାରିଲେ କି ନାହିଁ ।” ସମସ୍ତେ ହୁସିଆର ଖାଁର ଚତୁରତା ଦେଖି ଅବାକ୍ । ସମସ୍ତେ ଏକାବେଳକେ କହିଲେ, “ହଁ ହଁ ସେ ନିଶ୍ଚୟ ବାଜିରେ ହାରିଛି ।” ହୁସିଆର ଖାଁ ସ୍ତ୍ରୀ ଲୋକକୁ କହିଲା, “ହେ ଦୁଷ୍ଟା ରମଣୀ, ଦେଖ ତୁମେ ପହିଲେ ଦେଶର ଆଇନ୍‌ବିରୁଦ୍ଧ ଅତି ନିର୍ଲଜ ଆଚରଣ କରିଛ । ଦୁଇରେ ଜଣେ ସାଧାରଣ ପ୍ରଜାକୁ ଠକି ବହୁ ସମ୍ପତ୍ତି ତା’ଠୁ ମାରି ନେଉଥିଲ । ତେଣୁ ତୁମେ ଆମକୁ ଦଶହଜାର ଟଙ୍କା ଦିଅ । ନୋହିଲେ ରାଜାଙ୍କ ନିକଟକୁ ଧରି ନେବୁ ।” ସେ ସ୍ତ୍ରୀ ବିଚାରି ମୁଣ୍ଡକାଟରୁ ରକ୍ଷା ପାଇବାକୁ ତାଙ୍କୁ ଦଶହଜାର ଟଙ୍କା ଦେଲା । ଆଉ ସେ ତା ଜୀବନରେ କେବେ ଏପରି କରିବାର ଦେଖାଯାଇ ନାହିଁ । ପାଇଥିବା ଟଙ୍କା ହୁସିଆର ଖାଁ ଓ କମ୍‌ଅକଲ ବାଣ୍ଟି ନେଲେ । ହୁସିଆର ଖାଁ ତା’ର ବନ୍ଧୁକୁ ପୁଣି ହୁସିଆର କରିଦେଲା । ଯେପରି ସେ ସେଠା ଲୋକଙ୍କ ସଙ୍ଗେ ନ ଲାଗେ ।

କମ୍ଅକଲ ଜଞ୍ଜାଳନଗରରେ ରହିବାର ବହୁଦିନ ହେଲାଣି । ଆଜି ସେ ଆଉ ବାହାରକୁ ନ ଯାଇ ଘରେ ବସି ରହିବାକୁ ଠିକ୍ କଲା । ନିଶ ଦାଢ଼ିଗୁଡ଼ା ବଢ଼ିଥିବାରୁ ଭଲ ଲାଗୁ ନ ଥିଲା । କ୍ଷିଅର ହେବାକୁ ଜଣେ ଭଣ୍ଡାରୀ ଡକାଇଲା । ଭଣ୍ଡାରୀ ଆସିବାରୁ ତାକୁ କହିଲା, "ବାରିକେ, ମୋତେ କ୍ଷିଅର କରିଦିଅ, ତୁମକୁ କିଛି ମୁଁ ଦେବି ।" ବାରିକ ତାକୁ କ୍ଷିଅର କରିସାରି ତା'ର ପାଉଣା ମାଗିଲା । କମ୍ଅକଲ ତାକୁ ଦୁଇଟଙ୍କା ଦେଲା, ଯାହାକି ଭଣ୍ଡାରୀର ମଜୁରୀଠାରୁ ବହୁତ୍ ବେଶି । ବାରିକ ତାହା ନେଲା ନାହିଁ । କହିଲା, "ମୋ କିଛି ମୋତେ ଦିଅନ୍ତୁ । ମୋ 'କିଛି' ଛଡ଼ା ମୋର କିଛି ଲୋଡ଼ା ନାହିଁ ।" ତା କଥା ଶୁଣି କମ୍ଅକଲ ନିଜ ଜିଭ କାମୁଡ଼ି ପକାଇଲା । ମୋଟା ବୁଦ୍ଧିଯୋଗୁ ନିଜକୁ କେତେ ଧିକାରିଲା । ଭଣ୍ଡାରୀକୁ ପୁଣି ସେ ତିନି ଟଙ୍କା ଦେଲା । ସେ ତାହା ନ ନେଇ କହିଲା, "ମୋ 'କିଛି' ମୋତେ ଦିଅ । 'କିଛି' ଦେବାକୁ କହି ମୋ 'କିଛି' ନ ଦେଉଛ କାହିଁକି ?" କମ୍ଅକଲ ବଗ୍ରବ ଦେଉ ଦେଉ ତାକୁ ପଚିଶଟଙ୍କା ଦେଲା । ଭଣ୍ଡାରୀ ତାହା ନେବା ଦୂରେଥାଉ, ବେଜୁବେଳ ଜିଦ୍ ଧରି ପାଟି କରିବାକୁ ଲାଗିଲା । "ଆଜ୍ଞା, ଆପଣଙ୍କ ଟଙ୍କାକୁ ମୋର ଖାତିର ନାହିଁ । ଆପଣ ମୋତେ ଅସନ୍ତୋଷ କରାଇବାକୁ ଭାବୁଛନ୍ତି । ଆପଣ ପଚିଶ ଛାଡ଼ ପଚିଶହଜାର ଦେଲେ ବି ମୁଁ ମୋ ଜବାବରୁ ଟଳିବି ନାହିଁ । ନାହିଁ, ନାହିଁ ଆଜ୍ଞା, ମୋ 'କିଛି' ମୁଁ ନେବି । ମୋର ଆଉ କେଉଁଥିରେ ଦରକାର ନାହିଁ । କମ୍ଅକଲ ଏ ହଟହଟାରେ ପଡ଼ି କ'ଣ କରିବ ବରିରୁ ବଗ୍ରରୁ ହୁସିଆର ଖାଁ ଜୁଟିଗଲା । "କଳିର କାରଣ କ'ଣ" ହୁସିଆର ଖାଁ ଜାଣିବାକୁ ଚାହିଁଲା । କମ୍ଅକଲଠାରୁ ସବୁ ଶୁଣି ସେ ଭଣ୍ଡାରୀକୁ କହିଲା, "ଭାଇ କାଲି ବଡ଼ଭୋରୁ ଆସ, ତୁମ ପାଉଣା ନେଇଯିବ ।" ଭଣ୍ଡାରୀ ଚାଲିଗଲା । ହୁସିଆର ଖାଁ ଏକ ଗିନାରେ

ଦୁଧ ଆଣି ସେଥିରେ ଗୋଟେ ମଲା ଝିଣ୍ଟିକା ପକାଇଦେଲା । ସେ ଗିନାକୁ ଉପର ଥାକରେ ଥୋଇଦେଲା । ପରଦିନ ସକାଳେ ଭଣ୍ଡାରୀ ଆସି ତା ପାଉଣା ମାଗିଲା । ହୁସିଆର ଦୁଧ ଗିନାକୁ ହାତ ଦେଖାଇ ଭଣ୍ଡାରୀକୁ କହିଲା, "ଭାଇ ଦୟାକରି ସେ ଦୁଧ ଗିନାଟା ଆଣିଲ, ପିଇବା ।" ବାରିକ କ୍ଷୀର ଗିନାଟା ତଳକୁ ଆଣିଲା । ଦେଖିଲା ସେଥିରେ ଝିଣ୍ଟିକାଟା ଫୁଲି ଯାଇଛି, କିଛି ଭାସୁଛି । "ଦିଅ, ବେଗେ ଦିଅ" ହୁସିଆର ଖାଁ କହିଲା । ବାରିକ ପାଟିରୁ ହଠାତ୍ ବାହାରି ପଡ଼ିଲା, "ସାଆନ୍ତେ, ତାହା ପିଅନ୍ତୁ ନାହିଁ । ଆଃ, ସେଥିରେ ଗୋଟାଏ କିଛି ଭାସୁଛି ।" ହୁସିଆର ଖାଁ କହିଲା, "ସାବାସ୍ ଭାଇ, ତୁମ 'କିଛି'ଟା ତୁମେ ସେଥିରୁ ନିଅ । ମୋ ଦୁଧଟା ମୋତେ ଦିଅ ।" ଭଣ୍ଡାରୀ ବିଚରା ହସି ହସି ସେ ପୋକରି ଗୋଡ଼ ଧରି ତା ଘରକୁ ଗଲା । ବାଟରେ ସମସ୍ତଙ୍କୁ ଦେଖାଇ କହିଲା, "ଦେଖ ଦେଖ ଭାଇ, ମୋ 'କିଛି' ମୁଁ ପାଇଛି, 'କିଛି' କି ମୋର ଦେଖ । ପଚାଶ ଟଙ୍କା ଆଣିଲି ନାହିଁ, ଶେଷରେ ମୋ 'କିଛି' ମୁଁ ଆଣିଲି ।" ଏକଥା ଯେ ଶୁଣିଲା ତାକୁ ପ୍ରଶଂସା କଲା । ସେ ସଚ୍ଚା ଜଞ୍ଜାଳ ନଗରୀର ପିଲା ବୋଲି ତାକୁ ସବୁଆଡ଼ୁ ବାହାଦୁରୀ ମିଳିଲା ।

ଏଇ ତିନିଦିନ ରହଣିରେ କମ୍‌ଅକଲ ଦିଗ୍‌ଦାର୍ ହୋଇଗଲାଣି । ହୁସିଆର ଖାଁ ତାକୁ କହିଲା, "ଚାଲ ଏଥର ତୁମ ସହରକୁ ଯିବା । ମୁଁ ତୁମକୁ ଯେଉଁ ଉପଦେଶ ଦିଅଥିଲି, ତାହାର ସତ ମିଛ ବୁଝିଲ ତ ? ଏବେ ତୁମର ବନ୍ଧୁକୁ ବିଶ୍ୱାସ ଅଛି ତ ?" "ମୁଁ ଏବେ ଜାଣୁଛି, ମୋର ପୂଜାହାରୀ ଓ ମୋର ବନ୍ଧୁ କମ୍‌ଅଙ୍କ ସଙ୍ଗ ହୋଇଛନ୍ତି । ମୋତେ ଲୁଟ୍ କରିବାକୁ ସେ ମୋ ଘରେ ପଶିଲେ ଯେଉଁ ଜିନିଷରେ ହାତ ମାରିବ, ତାହା ତାକୁ ମୁଁ ଛାଡ଼ିଦେବାକୁ ପଣ କରିଛି । ମୋର ବିଶ୍ୱାସ, ସେ ମୋ ଟଙ୍କା ସୁନା ସିନ୍ଦୁକରେ ଆଗ

ହାତ ଦେବ ଓ ତାହା ନେବ । ଏହି ବିପଦରୁ ମୋତେ ରକ୍ଷା କରିବାକୁ ମୁଁ ତୁମର ଶରଣ ପଶିଛି ।” ଏହା କହି ମହାଜନ ବିକଳରେ କାନ୍ଦିବାକୁ ଲାଗିଲା । ହୁସିଆର ଖାଁ ତାକୁ ବୋଧ ଦେଇ କହିଲା, “ହଉ ଚାଲ ଏବେ ତୁମ ଦେଶକୁ ଯିବା । କିଛି ଚିନ୍ତା କର ନାହିଁ । ମୁଁ ସବୁ ଠିକ୍ କରିଦେବି । ତୁମେ ମୋତେ ଟଙ୍କା ତିନିହଜାର ଦେଇଥିଲ । ମୁଁ ବୋଧେ ତାଠୁ ଢେର୍ ବେଶି ଦେଲିଣି, ଏଇ ତିନିଦିନରେ ମୋ ଘରେ ତୁମେ ଥିବା ଭିତରେ । ମୁଁ ଜଣେ ଭଗନ୍ତମାନ ଉପଦେଶ ବିକାଳି । ମୋ ମହତ ରକ୍ଷା କରିବାକୁ ମୁଁ ତୁମକୁ ସାହାଯ୍ୟ କରିବି । ଯେହେତୁ ମୁଁ ତୁମ ବିପଦର ମୂଳରେ ଅଛି । ଦୁହେଁଯାକ ସଙ୍ଗେ ସଙ୍ଗେ ବାହାରିଲେ । କମ୍ଅକଲର ସହରରେ ପହଞ୍ଚିଲେ ।

ହୁସିଆର ଖାଁ କମ୍ଅକଲ ଘରେ ପହଞ୍ଚିଲା । ତା ଅଗଣାରେ ଗୋଟେ ଚଉଦଫୁଟ ଉଚା ଘଡ଼ ତିଆରି କରିବାକୁ ବରାଦ ଦେଲା । ମହାଜନ ଯଥାଶୀଘ୍ର ଗୋଟେ ମଞ୍ଚା ତିଆରି କରାଇଲା । ତା ଘରେ ଯେତେ ଜିନିଷ ଥିଲା, ସବୁ ସେ ମଞ୍ଚା ଉପରେ ସଜାଡ଼ି ରଖାଗଲା । ଏସବୁ ଉପରେ ଟଙ୍କା ସୁନା ସିନ୍ଦୁକ ଥୁଆ ହେଲା । ଗୋଟେ ଚଉଦଫୁଟ ଉଚର କାଠ ନିଶୁଣି ତିଆରି ହେଲା । ତାହା ମଞ୍ଚା ଉପରେ ଭୂଇଁକୁ ଲଗାଇ ସିଧାସଳଖ ରଖାଗଲା । ତାହାଛଡ଼ା ମଞ୍ଚା ଉପରକୁ ଯିବାର କିଛି ଅନ୍ୟବାଟ ରଖାଗଲା ନାହିଁ । ଘଡ଼ ଉପରକୁ ଯିବାର ଏକମାତ୍ର ବାଟ ହେଲା ସେହି ସିଧା ଠିଆ ହୋଇଥିବା କାଠ ସିଡ଼ି । କମ୍ଅକଲ ତା'ର ବନ୍ଧୁ କମ୍ଅକ୍କଲକୁ ଡକାଇଲା । ସେ ଆସି ଯିବାରୁ ତାକୁ କହିଲା, “ଦେଖ, ସେ ଘଡ଼ ଉପରେ ମୋର ସକଳ ସମ୍ପତ୍ତି ରଖାଯାଇଛି । ଦେଖ, ସେଠି ହୀରା, ନୀଳା, ମୋତି, ମାଣିକ୍ୟର ଅଳଙ୍କାରପତ୍ର ଓ ଟଙ୍କା ସୁନାର ସିନ୍ଦୁକମାନ ରହିଛି ।

ମୋର ଗୋରୁ, ଗାଈ, ଘୋଡ଼ା, ଶୂକରବାକର ସମସ୍ତଙ୍କୁ ସେଠି ଦେଖି ପାରୁଥିବ । ଏହାମଧ୍ୟରୁ ଯାହାକୁ ଇଚ୍ଛା ବାଛି ନଅ ।”



କମ୍‌ଅଙ୍କ ଚଳ ଉପରକୁ ଚଢ଼ିଲ । କେତେ ଉଚ୍ଚରେ ବାବା ! ପଡ଼ିଗଲେ ମଥାରୁ ଦନ୍ତ ନିକଳି ଯିବ । ସିଢ଼ିକୁ ମଞ୍ଚାର ଧାରରେ

ଏପରି ସିଧା ରଖାଯାଇଛି ଯେ, ଖୁବ୍ ସାହସୀ ଲୋକ ବି ସେଥିରେ ଚଢ଼ିବାକୁ ସାହସ କରିବ ନାହିଁ । କିନ୍ତୁ ସେ ଅବିଶ୍ବାସୀ ବନ୍ଧୁ ଧନ ଲୋଭରେ ଭୋଳ ହୋଇ ସିଢ଼ିର ପହିଲି ପାହାଚରେ ଗୋଡ଼ଦେଇ, ଅନ୍ୟ ପାହାଚକୁ ହାତରେ ଧରି ଉଡ଼କୁ ଉଠିବାକୁ ଚେଷ୍ଟା କଲା । ସେତେବେଳେ ହୁସିଆର ଖାଁ ତାକୁ ଧରି ପକାଇ କହିଲା, "ରହ ରହ ମୂର୍ଖ ଅବିଶ୍ବାସୀ, ତୁମେ ସିଢ଼ିରେ ଆଗ ହାତ ଦେଇଛ । ତାଲୁଇ ନେଇ ପଳା । ତୁମେ ବାଜିରେ ଜିତିଲ । ସିଢ଼ିଟି ପାଇଲ, ନିଅ ।" ବିଶ୍ବାସଘାତକ ବନ୍ଧୁ ହତାଶ ହେଲା । ସିଢ଼ିଟି କାନ୍ଧେଇ ଘରକୁ ଗଲା । ସହର ଲୋକେ ତାକୁ ପରିହାସ କରି ତାଳି ମାରିଲେ ।

## ଚାରି ସଙ୍ଗାତ କଥା

ବହୁତ ପୂର୍ବକାଳର କଥା । ଗୋଟିଏ ରାଇଜରେ ଚାରି ସଙ୍ଗାତ ଥିଲେ । ସେଥିରୁ ଜଣେ ବଣିଆପୁଅ, ଜଣେ ବଢ଼େଇପୁଅ, ଜଣେ ପଣ୍ଡିତପୁଅ, ଜଣେ ରଜାପୁଅ । ଚାରି ସଙ୍ଗାତଯାକ ପ୍ରତିଦିନ କୁସ୍ତି କରନ୍ତି । ସେମାନେ ଭାରି ବଳୁଆ ଓ ଖୁବ୍ ସାହସୀ । ଦିନେ



ସେମାନେ ମଲ୍ଲଯୁଦ୍ଧ ବା କୁସ୍ତି କରୁଛନ୍ତି, ତାଙ୍କ ପାଖରେ ଗୋଟିଏ ଅସୁର ହାବୁଡ଼ିଲା । ସେ ସେମାନଙ୍କୁ ଦେଖାଇ ଗୋଟିଏ ଗଛରୁ ଡାଳ

ଉଠାଇ ଦେଲା । ସେ ବାଡ଼ ଭାଙ୍ଗି ବାହାର ଆସିବାକୁ ସେହି ଗୁରୁ ସଙ୍ଗାତମାନଙ୍କୁ କହିଲା । ଜଣ ଜଣ କରି ସେ ବାଡ଼ ଭାଙ୍ଗିବାକୁ ଚେଷ୍ଟା କଲେ । ରାଜାପୁଅ ଛଡ଼ା କେହି ସେହି ବାଡ଼ ଭାଙ୍ଗିବାରେ ସମର୍ଥ ହେଲେ ନାହିଁ । ଅସୁର ରାଜାପୁଅକୁ କହିଲା, "ତୁମେ ଏଠା ସବୁଠୁ ବଳୁଆ ଅଛ । ତୁମେ ଏବେ ଲୁହାଗଡ଼କୁ ଯାଅ । ସେଠାରେ ଗୋଟିଏ ଅସୁର ଅଛି । ତୁମର ଲଖି ରାଜାଝିଅଟିଏ ଅଛି । ସେ ସବୁଠୁ ସୁନ୍ଦରୀ । ସେଠାକୁ ଯାଇ ଅସୁରକୁ ମାରି ସେ ରାଜାଝିଅକୁ ବାହା ହୁଅ ।" ଏ କଥାରେ ରାଜାପୁଅ ବେଶ୍ ଉତ୍ସାହୀ ହୋଇ ଏ ସମସ୍ତ ଖବର ରାଜାଙ୍କୁ ଜଣାଇଲେ । ରାଜାଙ୍କ ଅନୁମତି ପାଇ ସେ ଲୁହାଗଡ଼କୁ ଚାଲିଲା । ବାଟରେ ସେ ତା ତିନ ସଙ୍ଗାତଙ୍କୁ ଭେଟିଲା । ସେମାନେ ସାଙ୍ଗ ହୋଇ ଚାଲିଲେ । ସେମାନେ ଯାଉ ଯାଉ ଦିନେ ଗୋଟିଏ ନିଛାଟିଆ ଜାଗାରେ ପହଞ୍ଚିଲେ । ସେଠି ଗୋଟିଏ କୂଅ ଥିଲା । ସେ ସ୍ଥାନଟି ତାଙ୍କୁ ଖୁବ ଭଲ ଲାଗିଲା । ସେମାନେ ସେଠି ରହିଲେ । ବଣିଆପୁଅ ରୋଷେଇ କରିବାକୁ ରହିଲା । ଅନ୍ୟ ତିନ ସଙ୍ଗାତ ଶିକାର କରିଗଲେ । ରୋଷେଇ ସରିଲାବେଳକୁ ସେ କୂଅରୁ ଗୋଟିଏ ଅସୁର ବାହାରି ବଣିଆପୁଅକୁ କହିଲା, "ମୋତେ ଖାଇବାକୁ ଦିଅ ।" ବଣିଆପୁଅ ତାକୁ କହିଲା, "ମୁଁ ମୀର ବା ଫକୀର କାହାକୁ ଲାଗି ଦେଇ ନାହିଁ । ତୁମକୁ ଆଗ ଦେବି କିପରି ? ତୁମେ ବସ । ମୋ ସଙ୍ଗାତମାନେ ଆସି ଖାଆନ୍ତୁ, ତା'ପରେ ତୁମକୁ ଦେବି ।" ଏକଥା ଶୁଣି ଅସୁର ବଣିଆପୁଅକୁ ଟେକି ପୋପାଡ଼ି ଦେଇ ସବୁତକ ରନ୍ଧାଖାଦ୍ୟ ନେଇ ଚାଲିଗଲା । ତିନି ସଙ୍ଗାତ ଫେରି ଦେଖିଲେ ଖାଇବାକୁ କିଛି ନାହିଁ । ବଣିଆପୁଅ ସବୁକଥା କହିଲା । ତା ପରଦିନ ବଢ଼େଇପୁଅ ରୋଷେଇ କରିବାକୁ ରହିଲା । ଅସୁର ଆସିଲେ ତାକୁ ମାରି କରିବ କହିଲା । ଆଉ ତିନି ସଙ୍ଗାତ ଶିକାରକୁ

ଗଲେ । ଅସୁର ଆସି ବଢ଼େଇପୁଅକୁ ବଣିଆପୁଅର ଅବସ୍ଥା କଲା । ତା ପରଦିନ ପଣ୍ଡିତପୁଅ ରୋଷେଇ କରିବାକୁ ରହି ସେହି ଅବସ୍ଥା ହେଲା । ଶେଷଦିନ ରାଜାପୁଅ ରୋଷେଇ ପାଇଁ ରହିଲା । ଅସୁର ଆଗଦିନ ପରି ଆସି ଖାଇବାକୁ ମାଗିଲା । ରାଜାପୁଅ କହିଲା, "ମୁଁ



ଏତେବେଳଯାଏ ପୀର ବା ଫକିର କାହାକୁ ଭୋଗ ଦେଇ ନାହିଁ, ତୁମେ କେଡ଼େ ବଡ଼ପରେ ମାଗୁଛ ?" ଏହା-ଶୁଣି ଅସୁର ରାଜାପୁଅକୁ ଫୋପାଡ଼ିବାକୁ ଧରିଲାବେଳକୁ ରାଜାପୁଅ ତା ହାତକୁ ଧରି ପକାଇଲା । ତହୁଁ ଦୁଇଜଣ-ଯାକର ଘୋରତର ଯୁଦ୍ଧ ଲାଗିଲା । ଶେଷରେ ରାଜାପୁଅ ତାକୁ କୂଅ ଭିତରକୁ ଫିଙ୍ଗି-ଦେଲା ଓ ନିଜେ ତା ଭିତରକୁ ଡେଇଁ ପଡ଼ିଲା । ସେଠିବି ତାଙ୍କର ଖୁବ୍ ଲଢ଼େଇ ହେଲା । ଶେଷରେ ଅସୁର ହାରି ମାନିଲା ଓ ରାଜାପୁଅ ସଙ୍ଗେ ସନ୍ଧି କଲା । ତା ଝିଅକୁ ବିଭାଦେବାକୁ ଯାଚିଲା ଓ ସେ ନିଜେ ରାଜାପୁଅ ସଙ୍ଗେ ଯିବାକୁ ବାହାରିଲା । ରାଜାପୁଅ ତା ଝିଅକୁ ବିଭାହେବାକୁ ମଙ୍ଗିଲା ନାହିଁ । କାରଣ ତାର ମନ ଲୁହାଗଡ଼

ରଜାଝିଅଠାରେ ଥିଲା । ସେ ଅସୁରଝିଅକୁ ବଣିଆପୁଅ ସଙ୍ଗେ ବାହା କରାଇଦେଲେ । ତାକୁ ସେଠି ଛାଡ଼ି ତିନ ସଙ୍ଗାତ ଚାଲିଲେ । ଅସୁର ତାଙ୍କ ସଙ୍ଗେ ଯିବାରୁ ସେ ଯେଉଁ ଚାକର ଥିଲେ ସେହି ଚାକର ହେଲେ । ଅସୁରର ନାଁ ତାମସା ସା । ସେ ରଜାପୁଅକୁ ଭାରି ଭକ୍ତି, ସେବା ଓ ସାହାଯ୍ୟ କଲା । ସେମାନେ ଯାଉ ଯାଉ ଗୋଟେ ସହରରେ ପହଞ୍ଚିଲେ । ସେଠି ଜନମାନବ କାହାରି ଦେଖା ନାହିଁ । ଦୋକାନବାଡ଼ି ସବୁ ବନ୍ଦ । ସହର ମଝିରେ ଗୋଟିଏ ଜାଗାରେ ଏକ ରଜାଝିଅ ଥିଲା ଓ ସେ ଡାଲିଏ ଫୁଲ ଧରି ବସିଥିଲା । ସେ ଭାରି ସୁନ୍ଦରୀ । ଏମାନଙ୍କୁ ଦେଖି ସେ କାନ୍ଦିବାକୁ ଲାଗିଲା ଏବଂ କହିଲା "ଏଠୁ ଚାଲିଯା । ଏଠି ରହନା । ଗୋଟେ ବଡ଼ ଅସୁର ଏଠି ଅଛି । ଏଇଲେ ଆସିବ । ତୁମକୁ ଦେଖିଲେ ଗୋଟା ଗିଳିଦେବ ।" ତା'ସଙ୍ଗେ ମଣିଷ ରୂପରେ ଥିବା ତାମସା ସା ଅସୁର କହିଲା, "ସେକଥା ଶୁଣନା । ଆମେ ଏଇଠି ରହିବା ।" ସେମାନେ ସେଠି ସେ ରାତି ରହିଲେ । ବାଧା ହୋଇଥିବାରୁ ତିନ ସଙ୍ଗାତଯାକ ଶୋଇ ପଡ଼ିଲେ । ତାମସା ସା ଜଗି ରହିଲା । ରାତି ଅଧ, ସେ ଦେଖିଲା ଗୋଟେ ଡେଙ୍ଗା ଅସୁର । ମୁଣ୍ଡ ତା'ର ମେଘକୁ ଲାଗିଛି । ସେ ତା ଆଡ଼େ ଆସୁଛି । ତାକୁ ଦେଖି ତାମସା ସା ନରରୂପ ଛାଡ଼ି ଅସୁର ରୂପ ଧରିଲା । ତା ଆକାର ବଢ଼ାଇଲା । ଯେତେ ବଢ଼ାଇଲେ ସେଠା ଅସୁରର କାନ୍ଧ ଉଚ୍ଚରୁ ଅଧିକ ହେଲା ନାହିଁ । ଦୁହେଁଯାକ ଭୟାନକ ଲଢ଼େଇ କଲେ । ତାଙ୍କ ଲଢ଼େଇ ଦାଉରେ ସହରର ଘରଦ୍ୱାର ଥରି ଉଠିଲା । ଶେଷରେ ତାମସା ସା ସେ ଅସୁରକୁ ମାରିଦେଲା । ଲଢ଼େଇ ସରିଲାବେଳକୁ ଭୋର ହୋଇଗଲାଣି । ମଲା ଅସୁର ଦେହଟା ବଡ଼ଟ ଶବ୍ଦ କରି ପାହାଡ଼ପରି ତଳେ ପଡ଼ିଲା । ତା ଦେହ କୋଶେବାଟ ଲମ୍ବି ପଡ଼ିଥାଏ । ସେ ଦେଶର ରଜା

ଯେତେବେଳେ ଅସୁରର ମରଣ ଶୁଣିଲେ ଅତି ଆଶ୍ଚର୍ଯ୍ୟ ଓ ଭାରି ଖୁସି ହେଲେ । କାରଣ ସେ ଅସୁର ବଡ଼ ଦୁଷ୍ଟ ଥିଲା । ଦିନକୁ ୧୦ ଜଣ ମଣିଷ ସହରରୁ ଖାଉଥିଲା । ସହରରୁ ମଣିଷ ଖାଇ ଖାଇ ପଦା କରି ପକାଇଥିଲା । ଅସୁରକୁ କିଏ ମାରିଛି ବୋଲି ରାଜା ସନ୍ଧାନ କଲେ ଓ ଏହି ଗୁରୁଜଣଙ୍କୁ ପାଇଲେ । ଅସୁରମରାର ପୁରସ୍କାରସ୍ୱରୂପ ତାଙ୍କ ଝିଅକୁ ତାମସା ସାକୁ ବିଭା ହେବାକୁ କହିଲେ । ତାମସା ସା ସେଥିରେ ରାଜି ହେଲାନାହିଁ, ତା ବଦଳରେ ପଣ୍ଡିତପୁଅ ରାଜାଝିଅକୁ ବିଭା ହେଲା ।

ପଣ୍ଡିତପୁଅ ସେଠି ରହିଲା । ଆଉ ଦୁଇ ସଙ୍ଗାତ ଓ ତାମସା ସା ଚାଲିଲେ । ସେମାନେ ଯାଉ ଯାଉ ପୁଣି ଗୋଟିଏ ନଗ୍ରଟିଆ ଗଡ଼ରେ ପହଞ୍ଚିଲେ । ସେଠି ବି ଦେଖିଲେ ସବୁ ଶୂନ୍‌ଶାନ୍ । ଜନମାନବଟିଏ ଦେଖାନାହିଁ । ଶେଷରେ ଦେଖିଲେ ଏକ ଜାଗାରେ ବହୁ ମାଠିଆ ଦୁଧ ଥୁଆ ହୋଇଛି । ତା ପାଖେ ଗୋଟିଏ ଅତି ସୁନ୍ଦର ପୁଅ ଠିଆ ହୋଇଛି । ତାକୁ ସେମାନେ କାହିଁକି ଠିଆ ହୋଇଛି ସେଠି ବୋଲି ପଚାରିଲେ । ଦୋକାନ ବଜାର କାହିଁକି ବନ୍ଦ ଅଛି ବି ପଚାରିଲେ । ସେ ପିଲାଟି କହିଲା, "ସେଠାକୁ ଗୋଟିଏ ସିଂହ ପ୍ରତିଦିନ ଆସେ । ସେ ନିତି ଗୋଟିଏ ମଣିଷ ଖାଏ ଓ ଦଶ ମାଠିଆ ଦୁଧ ପିଏ । ଆଜି ମୋର ପାଳି, ସେ ମୋତେ ଖାଇବ, ଏଇ ଯେଉଁସବୁ ଦୁଧ ମାଠିଆ ଥୁଆ ହୋଇଛି ସବୁ ତାହାରି ପାଇଁ, ସେଇ ପିଇବ । ଏଠି ତୁମେମାନେ ରୁହନା, ବେଗେ ଚାଲିଯାଅ । ବାଟୋଇ ତିନିହେଁ ସେ ପିଲାକୁ ରକ୍ଷା କରିବେ ଏଇ ଆଶା ଓ ଭରସା ଦେଇ ସେଠି ସେମାନେ ରହିଲେ । ରାଜାପୁଅ ଓ ବଢ଼େଇପୁଅ ଶୋଇ ପଡ଼ିଲେ । ତାମସା ସା ଜଗି ରହିଲା । ଯେତେବେଳେ ରାତି ଅଧ ହେଲା, ସିଂହ ଗର୍ଜନ କରି ସେଠାକୁ ଆଇଲା । ତାମସା ସା ତାକୁ ଦେଖିଲାମାତ୍ରେ

ଚଢ଼ାଉ କଲା ଓ ମାରି ଦେଲା । ସକାଳେ ଲୋକେ ସହର ବୁଲି ଆସିଲେ । ଦେଖିଲେ ସିଂହ ମରିଛି । ପିଲାଟି ଜାଗିଛି । ତା ସଙ୍ଗେ ଆଉ ତିନିଜଣ ଅଛନ୍ତି । ସିଂହକୁ କିଏ ମାରିଲା ଲୋକେ ପଚାରି ବୁଝିଲେ । ଲୋକେ ସବୁକଥା ବୁଝିସାରି ସେମାନଙ୍କୁ ରାଜାଙ୍କ ପାଖକୁ ନେଲେ । ସିଂହ ମାରିବାର ପୁରସ୍କାରସ୍ୱରୂପ ବଡ଼େଇପୁଅ ସଙ୍ଗେ ରାଜାଝିଅକୁ ବିବାହ ଦେଲେ । ବଡ଼େଇପୁଅ ସେଠି ରହିଲା । ଗୋଟି ଗୋଟି ହୋଇ ତିନି ସଙ୍ଗାତ ଉହିଲେ । ରାଜାପୁଅ ତାମସା ସାକୁ ନେଇ ଚାଲିଲା । ଶେଷରେ ସେ ଦୁହେଁ ଲୁହାଗଡ଼ରେ ପହଞ୍ଚିଲେ । ସେଠି ଦେଖିଲେ ନଅର ଭିତରେ ସୁନ୍ଦରୀ ରାଜାଝିଅଟିଏ ଦୋଳିହିଲା ଉପରେ ବସିଛି । ଅସୁର ତାମସା ସା ରାଜାପୁଅକୁ ପିଠିରେ ବସାଇ ସେ ନଅର ଭିତରକୁ ଡେଇଁ ପଡ଼ିଲା । ରାଜାପୁଅକୁ ସେ ରାଜାଝିଅ ପାଖରେ ଛାଡ଼ିଦେଲା । ସେ ସୁନ୍ଦରୀ ଝିଅଟି ରାଜାପୁଅକୁ କହିଲା, "ତୁମେ ଏଠି ରୁହନା । ଗୋଟେ ଅସୁର ମୋତେ ଏଠି ବନ୍ଦୀ କରି ରଖିଛି ।" ରାଜାପୁଅ ତାକୁ ବୁଝାଇଦେଲା ଯେ ସେ ତାକୁ ବନ୍ଦୀ କରିଥିବା ଅସୁରକୁ ମାରି ଦିଆଯାଇଛି । ସେ ରାଜାଝିଅ ପାଖେ ରାଜାପୁଅ ରହିଲା । ସେ ଦୁହେଁ ଉପର ମହଲରେ ରହିଲେ । ତାମସା ସା ତଳ ମହଲରେ ରହିଲା । ତାମସା ସା ଉପର ମହଲକୁ ଯାଏନା । ରାଜାପୁଅ ନିତି ତାକୁ ଖାଇବାକୁ ଦେଇଯାଏ ।

ସେ ନଅର ନିକଟରେ ଗୋଟିଏ ଝରଣା ଥାଏ । ରାଜକନ୍ୟା ଦିନେ ସେଠାକୁ ଗାଧୋଇ ଯାଇଥିଲା । ତା'ର ଯୋତାଟିଏ ସେ ଝରଣାରେ ଭସିଗଲା । ସେହି ଝରଣାରେ ଆଉଠାଏ ଆଉ ଏକ ଦେଶର ରାଜପୁଅ ଗାଧୋଉଥିଲା । ରାଜକନ୍ୟାର ଯୋତାଟି ଭସିଯାଇ ତା'ର ଗୋଡ଼ରେ ଲାଗିଲା । ରାଜପୁଅ ସେ ଯୋତାକୁ ନେଇ ଦେଖିଲା, ତାହା ଗୋଟିଏ ସ୍ତ୍ରୀ ଲୋକର ଯୋତା । ସେ

ଯୋଚା ଯାଦାର ତାକୁ ବଶ ହେବାକୁ ମନେ ମନେ ସେ ପଣ କଲା। ସେ ନଅରକୁ ଫେରିଯାଇ ନ ଖାଇ ନ ପିଇ ଗୋଟିଏ ଘରେ ମୁହଁମାଡ଼ ଶୋଇଲା । ରାଜା ଯେତେବେଳେ ଘରକୁ ଆଇଲେ ରାଜା ପୁଅକୁ ତା ରୁଷାର କାରଣ ପଚାରିଲେ । ରାଜାପୁଅ ଗାଧୁଆ-ତୁଠରୁ ଆଣିଥିବା ଯୋଚା ଦେଖାଇ କହିଲା ଯେ ସେ ଯୋଚା ଯାଦାର ତାକୁ ସେ ବଶ ହେବ । ନୋହିଲେ ଜୀବନ ରଖିବ ନାହିଁ । ରାଜାପୁଅକୁ ଯେତେ ବୁଝାଇଲେ ସେ ବୁଝିଲା ନାହିଁ । ଶେଷରେ ରାଜା ସେଇ ଝିଅକୁ ବଶ କରାଇବାକୁ ଶପଥ କଲେ । ରାଜା ତାଙ୍କ ଦେଶର ଭୂତପ୍ରେତମାନଙ୍କୁ ଡକାଇଲେ । ସେ ଯୋଚା ଯାଦାର ତାକୁ କିଏ ଆଣିପାରିବ ପଚାରିଲେ । ଗୋଟିଏ ଡାହାଣୀ ଏହା କରିପାରିବ କହିଲା । ସେ ନଈନାଳ ପାଣିକୁ ଗେଳବା ମନ୍ତ୍ର ଶିଖିଥିଲା । ମନ୍ତ୍ରପଢ଼ି ସେହି ଝରଣାରେ ସେ ବୁଡ଼ିଲା । ଏକାବୁଡ଼ାକେ ଯାଇ ଲୁହାଗଡ଼ଠି ଉଠିଲା । ସେଠା ନଅର ନିକଟକୁ ଯାଇ ବକୁଳରେ ବାହୁନେଇ କାନ୍ଦିଲା । ରାଜାଝିଅ ତାକୁ ଦୋମହଲା ଉପରୁ ଦେଖିପାରି ଡକାଇ ନେଲା । ତା'ର ଦୁଃଖ ଶୁଣି ତାକୁ ପୋଇଲୀ କରି ପାଖରେ ରଖିଲା । ଅଳପ ଦିନରେ ରାଜାଝିଅକୁ ତା କାମରେ ଖୁସୀ କରି ପକାଇଲା । ଦିନେ ସେ ରାଜାଝିଅକୁ ରାଜାପୁଅର ଜୀବନ କେଉଁଠି ଅଛି ପଚାରିଲା । ରାଜାଝିଅ ତାହା ଜାଣି ନ ଥିଲା । ସେକଥା ରାଜାପୁଅକୁ ଯାଇ ପଚାରିଲା । ରାଜାପୁଅ କହିଲା ଯେ ତା ଜୀବନ ଏକ ଖଣ୍ଡାରେ ଅଛି । ସେ ଖଣ୍ଡା ଯେତେଦିନ ଯାଏ ଜକ୍‌ଜକ୍ କରୁଥିବ ସେ ସେତେଦିନ ଯାଏ ବଞ୍ଚିଥିବ । ଖଣ୍ଡା ଗୋଟାପାକ ମଇଳା ହୋଇଗଲେ ବା କଳଙ୍କି ଧରିଲେ ସେ ମରିଯିବ । ରାଜାଝିଅ ଏକଥା ତା ପୋଇଲୀକୁ କହିଦେଲା । ପୋଇଲୀ ପ୍ରତି ତା'ର ଅବିଶ୍ବାସ ନ ଥିଲା । ଏ ଭେଦ ପାଇଲାଦିନୁ ପୋଇଲୀ ରାଜାପୁଅକୁ

ମାରିବା ଓର ଖୋରରେ ରହିଲା । ଦିନେ ରାତ ଅଧରେ ସମସ୍ତେ ଶୋଇ ପଡ଼ିଛନ୍ତି । ଡାହାଣୀ ରାଜାପୁଅର ଜୀବନ ଖଣ୍ଡାଟି ନେଇଯାଇ ଆଣି ଜଳନ୍ତା ନିଆଁରେ ପକାଇଦେଲା । ରାଜାପୁଅ ସଙ୍ଗେ ସଙ୍ଗେ ମରିଗଲା । ରାଜାଝିଅ ନିଘୋଡ଼ ନିଦରେ ଶୋଇଥିଲା । ଡାହାଣୀ ତାକୁ ଝରଣା ପାଖକୁ ଟେକି ନେଲା । ଝରଣା ସୁଅରେ ରାଜାଝିଅକୁ ତା ରାଜା ବାପଙ୍କୁ ନେଇଗଲା । ସେ ରାଜା ଓ ରାଜାପୁଅ ତାକୁ ଦେଖି ଭାରି ଖୁସି ହେଲେ । କେତେବେଳକୁ ରାଜାଝିଅର ନିଦ ଭାଙ୍ଗିଲା । ଏ ନୂଆ ଜାଗା ଦେଖି ସେ ଚମକି ପଡ଼ିଲା । କିପରି ସେଠାକୁ ଗଲା ବୁଝି ପାରିଲା ନାହିଁ । ତାକୁ ରାଜାପୁଅକୁ ବାହା ହେବାକୁ କୁହାଗଲା । ରାଜାଝିଅ ତାଙ୍କୁ କହିଲା ଯେ ସେ ଏକ ବ୍ରତ କରିଛି । ବ୍ରତ ସରିବାକୁ ଆଉରି ବର୍ଷେ ରହିଛି । ସେ ଏବର୍ଷ ଭିତରେ ବାହା ହେବନାହିଁ । ବ୍ରତବର୍ଷ ପୂରିଗଲେ ବିବାହ ହେବାକୁ ତା'ର ଆପତ୍ତି ନାହିଁ । ସେଠା ରାଜା ଏଥିରେ ରାଜି ହେଲେ । ରାଜାଝିଅକୁ ଗୋଟିଏ ନିଅରରେ ରଖାଇଲେ । ସେଠି କଡ଼ା ପହରା ରହିଲେ ।

ତେଣେ ତାମସା ସା ଖାଇବାକୁ ପାଇଲା ନାହିଁ । ରାଜା ଝିଅ ତ ନାହିଁ । ରାଜାପୁଅ ମରିଛି । ତାକୁ କିଏ ଅବା ଖାଇବାକୁ ଦେବ ? ସେ ସାତଦିନ ଉପବାସରେ ରହିଲା ପରେ ଘଟଣା କ'ଣ ଜାଣିବାକୁ ବୁହିଁଲା । ସେ ଆପେ କରିଥିବା ପଣ ଭାଙ୍ଗି ଦୋମହଲକୁ ଗଲା । ସେ ଦେଖିଲାମାତ୍ରେ ସବୁକଥା ଠଉରାଇ ନେଲା । ସଙ୍ଗେ ସଙ୍ଗେ ଚୁଲିମୂଣ୍ଡକୁ ଧାଇଁଗଲା । ଖଣ୍ଡାକୁ ବାହାର କଲା । ନିରିଖି କରି ଦେଖିଲା । ଖଣ୍ଡା ଗୋଟିଯାକ ପୋଡ଼ିଯାଇ ନାହିଁ । ତା'ର ଅଗଟା ଏବେବି ଜକଜକ କରୁଛି । ସେ ଅଂଶଟା ମାଟିରେ ପୋତକୁ ପଶି ଯାଇଥିଲା । ଭାଗ୍ୟକୁ ପୋଡ଼ିଯାଇ ନ ଥିଲା । ତାମସା ସା ଲାଗିପଡ଼ି ଖୁବ୍ ଜୋରରେ ଘଷିବାକୁ ଲାଗିଲା । ବହୁ ପରିଶ୍ରମରେ ଖଣ୍ଡାଟି

ପୂଣି ଜକ୍‌ଜକ୍ କଲା । ରାଜାପୁଅ ପୁଣି ଖାଇଁ ଉଠିଲା । ଦୁହେଁଯାକ ରାଜାଝିଅକୁ ଖୋଜ ବାହାରିଲେ । ସେମାନେ ପଣ୍ଡିତପୁଅ ପ୍ରଭୃତି ସବୁ ସଙ୍ଗାତଙ୍କୁ ପାଇଲେ । ଅନେକ ଖୋଜ ଖୋଜ ରାଜାଝିଅ ବନ୍ଦୀ ଥିବା ରାଇଜକୁ ଗଲେ । ଏମାନେ ପହଞ୍ଚିଲା ଦିନକୁ ରାଜାଝିଅର ବ୍ରତ ଶେଷ ହେବାକୁ ଅତି ଅଳପ ଦିନ ଥିଲା । ବ୍ରତ ସରିଲେ ବିଭାଘର ହେବ । ବିବାହ ଘର ପାଇଁ ରାଜ୍ୟସାରା ଧୂମ୍‌ଧାମ୍ ଯୋଗାଡ଼ ଲାଗିଛି, ସେମାନେ ସେଠି ପହଞ୍ଚିଛନ୍ତି, ଏ ଖବର ରାଜାଝିଅକୁ ଦେବାକୁ ନାନା ପ୍ରକାରେ ଚିନ୍ତା କଲେ । ଶେଷରେ ସ୍ଥିର ହେଲା ପଣ୍ଡିତପୁଅ ଜ୍ୟୋତିଷ ବେଶରେ ରାଜାଝିଅ ପାଖକୁ ଯିବ । ତାହା ହିଁ ହେଲା । ପଣ୍ଡିତପୁଅ ଜ୍ୟୋତିଷ ବେଶରେ ରାଜାଝିଅର ହାତ ଦେଖି ଗତକଥା ସବୁ କହିଗଲା । ସମୟ ଓ ସୁବିଧା ଦେଖି ରାଜାପୁଅ ପ୍ରଭୃତି ଅଛନ୍ତି ସେ ସହରରେ ଏହା ଜଣାଇଲା । ତାକୁ ଉଦ୍ଧାର କରି ନେବାକୁ ଯେ ଯେ ଉପାୟ ସବୁ ଠିକ୍ କରା ହୋଇଛି ତାହା ସବୁ ଗୋଟି ଗୋଟି କରି ବୁଝାଇଦେଇ ପଣ୍ଡିତପୁଅ ଫେରିଲା । ସେହି ଅନୁସାରେ ରାଜାଝିଅ ସେ ଦେଶର ରାଜାଙ୍କୁ କହିଲା ଯେ ତାଙ୍କ ଦେଶରେ ତାଙ୍କ ବଂଶରେ ଗୋଟିଏ ପ୍ରଥା ଅଛି ଯେ, ବିବାହ ଦିନ ବର-କନ୍ୟା ସୁନା ବିମାନରେ ବସି ସହରଯାକ ବୁଲିବେ । ତା କଥାରେ ରାଜାଙ୍କ ମନରେ କିଛି ସନ୍ଦେହ ବା ଆଶଙ୍କା ନ ଥିଲା । ସେ ସଙ୍ଗେ ସଙ୍ଗେ ସୁନାର ବିମାନ କିଣି ଆଣିବାକୁ ତାଙ୍କ ଲୋକ ପଠାଇଲେ । ଏ ମଧ୍ୟରେ ତାମସା ସା ବଗିଚରେ ବଣିଆପୁଅ ଓ ବଢ଼େଇପୁଅ ଗୋଟିଏ ସୁନାର ବିମାନ ତିଆରି କରିଥିଲେ । ସେ ଅପୂର୍ବ ବିମାନଟି ରାଜା କିଣେଇ ନେଲେ । ବିବାହ ଦିନ ରାଜା, ରାଜାପୁଅ, ରାଜାଝିଅ ଓ ଡାହାଣୀ ସହ ବିମାନରେ ଚଢ଼ିଲେ । ସହର ଉପରେ ଆକାଶରେ ଉଡ଼ି ବୁଲିଲେ । ଆଗର ବଗିଚ

ମୁତାବକ ରାଜାଝିଅ ଏକ ଠିକ୍ ଜାଗାରେ ବିମାନ ରଖିବାକୁ କହିଲା । ବିମାନ ରହିବା ସଙ୍ଗେ ସଙ୍ଗେ ତାମସା ସା ଓ ଗୁରୁ ସଙ୍ଗାତ ଯାକ ସେ ବିମାନରେ ଚଢ଼ିଗଲେ । ସେଥିରେ ଥିବା ଗୁପ୍ତ ସୁବକୁ ମୋଡ଼ି ଦେଲେ ବିମାନ ଆକାଶର ବହୁ ଉପରକୁ ଉଡ଼ିଗଲା । ସେମାନେ ସେ ଦେଶର ରାଜାଙ୍କୁ, ରାଜାପୁଅକୁ ଓ ଡାହାଣୀକୁ ବାନ୍ଧି ପକାଇଲେ । ସେମାନେ ଗୋଟି ଗୋଟି କରି ନଈକୁ ପକାଇ ଦେଲେ । ରାଜାଝିଅ ଓ ତାମସା ସା ସହ ଗୁରୁ ସଙ୍ଗାତଯାକ ନିଜ ଦେଶକୁ ଫେରିଗଲେ । ସୁଖରେ ଘରଦ୍ୱାର କରି ରହିଲେ ।

# ସାତ ରାଜାପୁଅ କଥା

ଅତି ପୂର୍ବକାଳର କଥା । ଏକ ରାଇଜରେ ଏକ ରଜା ଥିଲେ । ତାଙ୍କର ସାତ ପୁଅ । ସବୁ ପୁଅଯାକ ଦେଖିବାକୁ ଅତି ସୁନ୍ଦର, ଖୁବ୍ ସାହସୀ, ଭାରି ଜ୍ଞାନୀ ମଧ୍ୟ । ରଜା ସେମାନଙ୍କୁ ଭାରି ଭଲ ପାଉଥିଲେ ଓ ସମସ୍ତଙ୍କୁ ସମାନ ଦେଖୁଥିଲେ । କେବେ ସେମାନଙ୍କ ପ୍ରତି ପାତରଅନ୍ତର କରୁ ନ ଥିଲେ । ରାଜାପୁଅମାନେ ସମାନ ପୋଷାକ ପିନ୍ଧୁଥିଲେ, ସମାନ ଦରବ ଖାଉଥିଲେ ଓ ସମାନ ହାତ ଖର୍ଚ୍ଚ ପାଉଥିଲେ । ସେମାନେ ଯେତେବେଳେ ବଡ଼ ହୋଇଗଲେ, ରଜା ସେମାନଙ୍କ ପାଇଁ ଏକା ଢଙ୍ଗର ନଅର ତୋଳାଇଦେଲେ । ସବୁ ନଅରଯାକ ଉତ୍ତମ ରୂପେ ସମାନଭାବେ ସାଜସଜା କରାଇଦେଲେ । ଏଣୁ ନଅରସବୁରେ କେଉଁ କିଛି ଫରକ ଦେଖିପାରୁ ନ ଥିଲେ । ବାପାଙ୍କଠାରୁ ସମାନ ସ୍ନେହ, ଆଦର, ନ୍ୟାୟ ପାଇ ରାଜକୁମାର-ମାନେ ବେଶ୍ ସୁଖରେ ଥିଲେ । ପରସ୍ପରକୁ ଅତି ଭଲ ପାଉଥିଲେ ।

ରାଜାପୁଅମାନଙ୍କର ବିବାହ ବୟସ ହୋଇଗଲା । ସେମାନଙ୍କ ପାଇଁ ସମାନ ରୂପର, ସମାନ ଗୁଣର, ସମାନ ବୟସର କନ୍ୟା ଖୋଜିବାକୁ ରଜା ସବୁ ଦିଗକୁ ଦୂତ ପଠାଇଲେ । ଦୂତମାନେ ସାରା ଦୁନିଆର ସବୁଆଡ଼ ବୁଲିଲେ । ଅନେକ ଦେଶର ରାଜକନ୍ୟା ଦେଖିଲେ; କିନ୍ତୁ ସାତଟି ଏକାଭଳିଆ କନ୍ୟା କାହିଁ ପାଇଲେ ନାହିଁ । ହତାଶ ହୋଇ ଫେରିଲେ ଓ ରଜାଙ୍କ ଛାମୁରେ ଜଣାଇଲେ,

"ମହାରାଜ, ହଜୁରଙ୍କ ହୁକୁମରେ ପୃଥ୍ୱୀ ଗୋଟା ବୁଲିଲୁ, ସାତଦ୍ୱୀପଯାକ ଦେଖିଲୁ, କେତେ ସମୁଦ୍ର, କେତେ ପାହାଡ଼ ଡେଇଁ କେତେ ରାଇଜକୁ ଗଲୁ, କେତେ ରାଜାଙ୍କର ଖଣ୍ଡିଆ କୁଡ଼ିଆ, କେତେ ଧନୀ, ଭୋଗୀ ଲୋକଙ୍କର ବଡ଼ିଆ ବଡ଼ିଆ କୋଠାବାଡ଼ିମାନ ଖୋଜିଲୁ; କିନ୍ତୁ ଆପଣଙ୍କ ବଗିଚାର ମୁକ୍ତାବନ ସାତଗୋଟି ସମାନ ରୂପର, ଗୁଣର, ବୁଦ୍ଧିବିଦ୍ୟାର କନ୍ୟା କାହିଁ ଭେଟିଲୁ ନାହିଁ। ବାସ୍ତବରେ ରାଜକୁମାରମାନଙ୍କ ଯୋଗ୍ୟ କନ୍ୟା ପାଇବା କାଠିକର ପାଠ।" ଦୂତମାନଙ୍କଠାରୁ ହତାଶବାଣୀ ଶୁଣି ରାଜା ବଡ଼ ଅଥୟ ହୋଇପଡ଼ିଲେ। ତାଙ୍କୁ ଅନ୍ନଜଳ ରୁଚିଲା ନାହିଁ। ରାଜାଙ୍କର ମନ୍ତ୍ରୀମାନେ ବଡ଼ ବୁଦ୍ଧିମାନ ଥିଲେ। ରାଜା ଏ ବିଷମ ଚିନ୍ତାରେ ପଡ଼ିଥିବାରୁ ସେମାନଙ୍କୁ ବଡ଼ ବାଧିଲା। ସେମାନେ ଏକ ଉପାୟ ଚିନ୍ତାକରି ରାଜାଙ୍କୁ କରଯୋଡ଼ି ଜଣାଇଲେ, "ମହାରାଜ, ଏ ସାମାନ୍ୟ କଥା ପାଇଁ ଏତେ ଚିନ୍ତା, ଏତେ ଦୁଃଖ କରନ୍ତୁ ନାହିଁ। ମଣିମା, ରାଜକୁମାରମାନଙ୍କ ପାଇଁ ଯେପରି କନ୍ୟା ଖୋଜୁଛନ୍ତି, ସେପରି କନ୍ୟା ପାଇବା ମୋଟେ ସମ୍ଭବ ନୁହେଁ। ବୁଦ୍ଧିମାନ ଲୋକ କର୍ମ କରି ନିରାଶ ହେଲେ, କପାଳ ଉପରେ ନିର୍ଭର କରନ୍ତି। ହଜୁର, ରାଜକୁମାରମାନଙ୍କୁ ଡକାଇ ପଚାରନ୍ତୁ, ସେମାନଙ୍କ କପାଳକୁ ଯାହା ଯୁଟିବ, ସେମାନେ ତାହା ଗ୍ରହଣ କରିବେ କି ନାହିଁ? ସେମାନେ ଏଥିରେ ସମ୍ମତ ହେଲେ ସମସ୍ୟା ତୁରନ୍ତ ସମାଧାନ ହୋଇ ପାରିବ।" ରାଜକୁମାରମାନଙ୍କୁ ତତ୍ପରତା ଡକରା ହେଲା। ସେମାନଙ୍କୁ ପଚାରିଗଲା ଯେ, ଯାହା ଭାଗ୍ୟରେ ଯାହା ଯୁଟିବ, ସେଥିରେ ସେମାନେ ରାଜି ହେବେ। ସେମାନେ ଏଥିରେ ରାଜି ହେଲେ। ଏହା ଜାଣି ରାଜାଙ୍କର ମନ ଥୟ ହେଲା। ତାଙ୍କ ଚିନ୍ତା ଦୂର ହେଲା। ନଅରର ସବୁଠାରୁ ଉଚ୍ଚା କୋଠା ଉପରକୁ ରାଜକୁମାରମାନଙ୍କୁ

ଡାକ ନଆଗଲା । ସେ କୋଠା ଉପରକୁ ସହର ଗୋଟାସାକ ଓ ଦୂରକୁ ବହୁ କୋଷ ଯାଏ ସଫା ଦେଖା ଯାଉଥାଏ । ରାଜାପୁଅ-ମାନଙ୍କ ଆଗରେ ସାତଟି ଧନୁଶର ଥୁଆ ହେଲା । ତାଙ୍କୁ କୁହାଗଲା ଯେ, ସେମାନେ ଯେ କୌଣସି ଦିଗକୁ ଶର ମାରିବେ । ସେ ଶର ଯାଇ ଯା'ର ଘରେ ପଡ଼ିବ, ସେ ଘର ରାଜାର ହେଉ, ପ୍ରଜାର ହେଉ, ଧନୀର ହେଉ, ଗରିବର ହେଉ, ତା'ର କନ୍ୟାକୁ ବିବାହ କରିବାକୁ ହେବ । ରାଜକୁମାରମାନେ ଧନୁ ଧରି ମନଇଚ୍ଛା ଯେ କୌଣସି ଦିଗକୁ ଶରମାନ ଛାଡ଼ିଲେ । ସମସ୍ତଙ୍କ ଶର ଯାଇ ବଡ଼ଲୋକ ତଥା ଭଲ ଲୋକମାନଙ୍କ ଘରେ ପଡ଼ିଲା । କିନ୍ତୁ ସବା ସାନପୁଅର ଶର ସହରକୁ ଡେଇଁ କେଉଁ ଦୂରକୁ ଚାଲିଗଲା, ଦେଖାଗଲା ନାହିଁ । ରାଜାଙ୍କ ଲୋକମାନେ ଶରମରି ଦିଗକୁ ଧାଇଁଲେ । ଦେଖିଲେ ଶରଟି ଗୋଟିଏ ଗଛଡାଳରେ ଲାଗିଛି । ସେଠାରେ ଗୋଟିଏ ମାଈ ମାଙ୍କଡ଼ ବସିଛି ।

ସାନପୁଅ ଶରର ଏ ପ୍ରକାର ଗତି ଦେଖି ରାଜା ମର୍ମାହତ ଓ ଦୁଃଖିତ ହେଲେ । ରାଜା ଓ ମନ୍ତ୍ରୀମାନେ ଆଉଥରେ ଶରମାରି ଭାଗ୍ୟ ପରୀକ୍ଷା କରିବାକୁ ବୁଝାଇଲେ । କାରଣ ମାଙ୍କଡ଼ଟାଏ ଧରି ମଣିଷ ଘର-ସଂସାର କରି ନ ପାରେ । ରାଜା ପୁଅକୁ ଯେତେ ବୁଝାଇଲେ ସେ ବୁଝିଲା ନାହିଁ । ସେ ଅତି ବିନମ୍ର ସ୍ୱରରେ ରାଜାଙ୍କୁ କହିଲା, "ବାପା, ମୋତେ ବଳାନ୍ତୁ ନାହିଁ ଆଉ । ମୋ ଭାଇମାନଙ୍କ ଭାଗ୍ୟରେ ଯାହାଥିଲା ସେମାନେ ପାଇଲେ । ମୋ କପାଳରେ ଯାହାଥିଲା ତାହା ମୁଁ ପାଇଲି । ଏଥିରେ ମୋର ଭଲେହେଲେ ଆପତ୍ତି ନାହିଁ କି ଦୁଃଖ ନାହିଁ । ଶର ମାରିବା ଆଗରୁ ମୁଁ ଯାହା ଶପଥ କରିଥିଲି ତାହା ଭଙ୍ଗ କରିବାକୁ କୁହନ୍ତୁ ନାହିଁ, ଅନୁରୋଧ କରୁଛି । ମୁଁ ଶର ଥରେ ମାରିଛି, ଆଉଥରେ ମାରିବି ନାହିଁ । ମଣିଷ ଜୀବନ ସ୍ଥିର

ନୁହେଁ । ଗୁଇ ପର ଆଜ ଅଛୁ କାଲକ ନାହିଁ । କିନ୍ତୁ କଥା କାଳକାଳକୁ ରହିବ । ମୋ ଶପଥରୁ ମୁଁ ଟଳିବ ନାହିଁ । ମୁଁ ଜାଣେ ମଣିଷ ମାଙ୍କଡ଼କୁ ବନ୍ଧ କରି ନ ପାରେ । ଆପଣମାନେ ଜାଣନ୍ତୁ ମୁଁ ଏ ଜୀବନରେ ଆଉ କାହାକୁ ବନ୍ଧ ହେବ ନାହିଁ । ମୁଁ ଏବେ ଯିବ, ସେ ମାଙ୍କଡ଼କୁ ଧରି ଆଣିବ । ତାକୁ ଘରେ ରଖିବ । ତା'ସଙ୍ଗେ ମୋ ଜୀବନ କଟାଇବ ।'' ଏହାକହି ସେ ଚାଲିଗଲା । ମାଙ୍କଡ଼କୁ ଘରକୁ ଧରି ଆଣିଲା ।

ଛଅ ରାଜାପୁଅଙ୍କର ବଡ଼ ଜାକଜମକରେ ଅତି ଆଡ଼ମ୍ବରରେ ବାହାଘର ହେଲା । ସହର ଆଲୋକମାଳାରେ ଉଜ୍ଜ୍ୱଳ ଦିଶିଲା । ବାଣ ଶବ୍ଦରେ ପୃଥୀ ଥରି ଉଠିଲା । ନାନାପ୍ରକାର ନୃତ୍ୟଗୀତରେ ସହର ମୁଖରିତ ହେଲା । ସହରବାସୀଏ ଆମ୍ବପତ୍ରରେ ତୋରଣ ବାନ୍ଧିଲେ । ଦ୍ୱାରେ ଦ୍ୱାରେ କଦଳୀଗଛ ଠିଆକଲେ । ମହାଜନମାନେ ଦୋକାନ-ବାଡ଼କୁ ଅତି ସୁନ୍ଦର ସାଜସଜ୍ଜା କଲେ । ସହରର ଗଳିକନ୍ଦିରେ ଲୋକଗହଳ ହେଲେ । ସାରାସହର ଆନନ୍ଦ ଉତ୍ସବରେ ମାତି ଉଠିଲା । କେବଳ ସାନ ରାଜାପୁଅ ତା ନଅରରେ ଦୁଃଖରେ ବସି ରହିଲା । ସେ ମାଙ୍କଡ଼ ବେକରେ ଗୋଟେ ମୁକ୍ତାର ମାଳ ଲମ୍ବେଇ ଦେଲା । ତାକୁ ଗୋଟେ ଗଦି ଚୌକିରେ ବସାଇଲା । ତାକୁ ଡାକି କହିଲା, ''ହେ ମୋ ସ୍ନେହକପାଳୀ ବାନର ! ତୋତେ ଯେପରି କେହି ପଚାରୁ ନାହାନ୍ତି । ଏ ଆନନ୍ଦ ଉତ୍ସବରେ ବି ମୋତେ କେହି ପଚାରୁ ନାହାନ୍ତି । କିନ୍ତୁ ମୁଁ ତୋତେ ସୁଖୀ କରିବାକୁ ଚେଷ୍ଟା କରିବ । ତୋତେ ଯେଉଁ ସୁନା ଚେନ୍‌ରେ ବାନ୍ଧିଛି, ତାକୁ ଟାଣିରେ ଟାଣନା । ଏହାଠୁ ବଳି ନିରାପଦ ଜାଗା ଆଉ ତୋ ପାଇଁ ନାହିଁ । ହତଭାଗିନୀ, ତୋତେ ଭୋକ ହେଲଣି କି !'' ଏହାକହି ଗୋଟିଏ ସୁନାଥାଳିରେ ବଛିଆ ଫଳମୂଳ ତା ଆଗରେ ବାଢ଼ି ଦେଲା । କେତେ ଆଦର କରି

ଖୁଆଇଲା । ତାକୁଇ କଥା କହୁ, ତା'ର ସେବା କରି ରଜାପୁଅ ତା ଦିନ ସାରିଲା । ଲୋକେ ତାକୁ ଅବୁଝା, ଅଝଟିଆ, ଅମିଆଣିଆ ଓ ଅଧମ କହି ନାନା ନିନ୍ଦା କଲେ । ରଜାପୁଅ କାହାରି କଥା କାନକୁ ନେଲାନି ।

ରଜା ଓ ତାଙ୍କ ପାତ୍ରମନ୍ତ୍ରୀମାନେ ସାନ ରାଜକୁମାରକୁ ନାନା-ପ୍ରକାରେ ବୁଝାନ୍ତି । ଦିବ୍ୟସୁନ୍ଦରୀ କନ୍ୟାଟିଏ ବିଭାହେବାକୁ କଥା କୁହନ୍ତି । ନିଜ ଭୁଲ୍ କଥା ଛାଡ଼ିବାକୁ ଶିଖାନ୍ତି । ରାଜକୁମାର କିନ୍ତୁ ବାପ, ଭାଇ, ବନ୍ଧୁବାନ୍ଧବ, ପାତ୍ରମନ୍ତ୍ରୀ କାହାରି କଥା ଶୁଣେ ନାହିଁ । ସମସ୍ତଙ୍କୁ କହେ, "ମୁଁ ଥରେ ଯାହା ସତ୍ୟ କରିଛି, ତାହା ଏ ଜୀବନରେ ଲଙ୍ଘିବି ନାହିଁ । ମରଦର ଜବାବ ପାହାଡ଼ଠାରୁ ଅଟଳ ଓ ଅଚଳ ।" ଦିନ ଦିନ ହୋଇ କେତେ ମାସ କେତେ ବର୍ଷ ବୋହିଗଲା । ରାଜକୁମାରର ମତିଗତି ବଦଳିବାର ଦେଖାଗଲା ନାହିଁ । ବରଂ ଦେଖାଗଲା ଦିନୁଦିନ ମାଙ୍କଡ଼ ପ୍ରତି ତା'ର ଟାଣ ବଢ଼ୁଛି । ମାଙ୍କଡ଼ ମଧ୍ୟ ଦିନୁଦିନ ତାକୁ ବେଶି ଆବୋରୁଛି । ସେ ରଜାପୁଅର କଥା ମାନି ଚଳୁଛି । ତା ପ୍ରତି ସ୍ନେହମମତାର ଭାବଭଙ୍ଗୀ ବେଶି ବେଶି ଦେଖାଉଛି ।

ଦିନେ ରଜା ସାତପୁଅଙ୍କୁ ଡକାଇ କହିଲେ, "ପିଲାଏ, ମୁଁ ଦେଖୁଛି ତୁମେମାନେ ବେଶ୍ ସୁଖଶାନ୍ତିରେ ଅଛ । ଏପରିକି ସାନପୁଅ ମଧ୍ୟ ତା ଅପୂର୍ବ ସାଥୀ ସହ ଆନନ୍ଦରେ ଅଛି । ପୁଅଝିଅଙ୍କର ସୁଖଶାନ୍ତି ଦେଖିଲେ ବାପ ମା'ଙ୍କର ଆନନ୍ଦର ସୀମା ରହେନି । ଯା'ହେଉ ମୁଁ ଏବେ ମୋ ବୋହୂମାନଙ୍କୁ ଦେଖି ସେମାନଙ୍କୁ କିଛି ଉପହାର ଦେବାକୁ ଚାହେଁ ।" ସବା ବଡ଼ପୁଅ ବଡ଼ ଭକ୍ତିରେ କହିଲା, "ହଜୁର, ଯେବେ କାଲି ମୋ ଦୁଆରକୁ ବିଜେ କରନ୍ତେ, ନିଜକୁ ଧନ୍ୟ ମଣନ୍ତି ।" ରଜା ଅତି ଆନନ୍ଦରେ ବଡ଼ପୁଅର

ନିମନ୍ତ୍ରଣ ସ୍ୱୀକାର କଲେ । ତା ପରଦିନ ବଡ଼ ରାଜପୁଅ ଭୋଜ ପାଇଁ ବହୁ ପ୍ରକାର ଦାମିକା ଖାଦ୍ୟର ବ୍ୟବସ୍ଥା କଲା । ବେଶକାରିଣୀମାନେ ଲାଗିପଡ଼ି ରାଜକୁମାରୀଙ୍କୁ ବେଶ କରାଇଲେ । ରାଜା ଯଥାସମୟରେ ବଡ଼ପୁଅ ନଅରକୁ ବିଜେ କଲେ । ରାଜକୁମାର ଓ ତା ସ୍ତ୍ରୀର ଅଭ୍ୟର୍ଥନା ଆୟୋଜନ ଦେଖି ଖୁବ୍ ଖୁସି ହେଲେ । ରାଜା ପୁଅ-ବୋହୂଙ୍କୁ ବହୁ ଅଳଙ୍କାର ହୀରା, ମାଳା, ମୋତି, ମାଣିକ୍ୟ ଓ ପୋଷାକାଦି ଦେଲେ । ପାଖରେ ବସାଇ ଦୀର୍ଘାୟୁ ହୋଇ ସଂସାରରେ ସୁଖଶାନ୍ତିରେ ରହିବାର ଅମୂଲ୍ୟ ଉପଦେଶ ଦେଲେ । ରାଜା ସେଠାରେ ଅନେକ ସମୟ ବିତାଇ ନିଜ ନଅରକୁ ବାହୁଡ଼ା ବିଜେ କଲେ ।

ତା ପରଦିନ ରାଜା ଦ୍ୱିତୀୟ ରାଜକୁମାର ନଅରକୁ ବିଜେ ହେଲେ । ସେଠି ମଧ୍ୟ ସେହିପରି ତୃପ୍ତି ଓ ସନ୍ତୋଷ ଲାଭ କରିଥିଲେ । ଏହିପରି କ୍ରମେ ଛଅ ରାଜକୁମାରଙ୍କ ଘରେ ଅତି ସ୍ନେହ, ସମ୍ମାନ, ଭକ୍ତି ଓ ପ୍ରୀତିର ଅଭ୍ୟର୍ଥନାରେ ରାଜା ଖୁବ୍ ଆପ୍ୟାୟିତ ହେଲେ । ପୁଅ ଓ ବୋହୂମାନଙ୍କୁ ଧନସମ୍ପତ୍ତି, କଲ୍ୟାଣ ଓ ଉପଦେଶ ଦେଇ ସୁଖୀ କରାଇଲେ । ଛଅପୁଅଙ୍କର ନିମନ୍ତ୍ରଣ ସରିଯିବାରୁ ସବା ସାନପୁଅର ନିମନ୍ତ୍ରଣ ପାଳି ପଡ଼ିଲା । ସେ ବିଚରା ବଡ଼ ଅଡୁଆରେ ପଡ଼ିଲା । ରାଜାଙ୍କୁ କପର ମାଙ୍କଡ଼ଟାକୁ ସ୍ତ୍ରୀ ରୂପରେ ଦେଖାଇବ ଏହି ଭାବନାଣି ତାକୁ ବଡ଼ ବାଧିଲା । ଅବଶ୍ୟ ସେତେବେଳକୁ ମାଙ୍କଡ଼ଟି ସ୍ନେହ ଓ ଭକ୍ତିରେ ବଡ଼ଘର ଝିଅ ବୋହୂଙ୍କଠାରୁ ବଳି ଗଲାଣି । ଯେତେହେଲେ ତ୍ରୁର ମାଙ୍କଡ଼ଟାଏ ତ । କାହାରି ମନକୁ ଭେଦିବ ନାହିଁ । ରାଜକୁମାର ଘରକୁ ଆସି ତା'ର ଅତି ସ୍ନେହ ଓ ଆଦରର ମାଙ୍କଡ଼କୁ କୋଳରେ ବସାଇ କହିଲା, "ହେ ମୋର ଦୁଃଖ-ସୁଖର ସାଥୀ, ମୁଁ ଏବେ କି ବୁଦ୍ଧି କରିବି

କହୁ ଛ । ଏ ବିଷୟରେ ମୋତେ କଥା ଦି'ପଦ କହିବାକୁ ପାଞ୍ଚି ଫିଟାନ୍ତ ହେଲେ ! ମୋ ଭାଇମାନେ ତାଙ୍କ ବୋହୂମାନଙ୍କୁ ବାପାଙ୍କୁ ଦେଖାଇ ସାରିଲେଣି । ସେ ଏଠାକୁ ଆସିଲେ ମୁଁ କ'ଣ କପଟର ଦେଖାଇବି ! ମୋର ତ ତାଙ୍କୁ ନିମନ୍ତ୍ରଣ କରିବାକୁ ଭୟ ହେଉଛି । ମୁଁ ତୁମଲାଗି କେତେ ଯେ ଲୋକହସା ହେଲଣି, ତା'ର ଥଳକୂଳ ନାହିଁ । ଏବେ ବାପାଙ୍କୁ ନିମନ୍ତ୍ରଣ କରି ତୁମକୁ ଦେଖାଇଲେ ଲୋକହସାରେ ହଜିଯିବ ସିନା !" ମାଙ୍କଡ଼କୁ ରଜାପୁଅ କେତେ-ବେଳଯାଏ ଏହିପରି କେତେ କ'ଣ ଗପିଲା । ମାଙ୍କଡ଼ ନିକଟରେ ଏହିପରି ଗପିବାର ତା'ର ଅଭ୍ୟାସ ହୋଇଗଲାଣି । ସତେ ଅବା ମାଙ୍କଡ଼ ଏସବୁ ବୁଝୁଛି । ରଜାପୁଅ ତା'ର ଅଭାବ ଅଭିଯୋଗ ଦୁଃଖସୁଖର କଳ୍ପନା ମାଙ୍କଡ଼ ଆଗରେ ଥୋଇ, ସେ ତାକୁ ଅତି ଆଗ୍ରହରେ ଧୀରସ୍ଥିର ଭାବେ ଶୁଣେ । ମାଙ୍କଡ଼ ପରି ମନୋଯୋଗୀ ଶ୍ରୋତା ରଜାପୁଅ କାହିଁ ପାଆନ୍ତା ନାହିଁ । ମାଙ୍କଡ଼ ତା ପ୍ରତି କେବେ ଅବହେଳା ବା ବେଖାତିର କରେ ନାହିଁ । ବରଂ ତା'ର ଚତୁରତା କେବେକେବେ ରଜାପୁଅକୁ ମୁଗ୍ଧ କରେ, ଅବାକ କରେ । କିନ୍ତୁ ସେଦିନ ରଜାପୁଅର ଆଶ୍ଚର୍ଯ୍ୟରସୀମା ରହିଲା ନାହିଁ । ଯେତେ-ବେଳେ ମାଙ୍କଡ଼ ତାକୁ କହିଲା, "କିଛି ପରୁଆ ନାହିଁ । ଏହି ଛାର କଥାକୁ ଚିନ୍ତା କର ନାହିଁ । ତୁମ ଭାଇମାନେ ରଜାଙ୍କୁ ଯେପରି ନିମନ୍ତ୍ରଣ କରିଛନ୍ତି ତୁମେ ସେହିପରି ନିମନ୍ତ୍ରଣ କର । କିନ୍ତୁ ରଜାଙ୍କୁ କହିବ ସେ ତାଙ୍କର ପାତ୍ରମନ୍ତ୍ରୀ, ସୈନ୍ୟସାମନ୍ତ, ଚାକରବାକର ସହ ଆସିବେ । ଯାହା ମୁଁ କହିଲି ତାହା ଶୀଘ୍ର କର । "ହେ ଭଗବାନ ! ଏଥିରେ କି ରହସ୍ୟ ରଖିଛ !" ରଜାପୁଅ ଏହାକହି ରଜାଙ୍କୁ ପାତ୍ରମିତ୍ର ଗହଣରେ ବିଜେ ହେବାକୁ ନିମନ୍ତ୍ରଣ କଲା । ନିମନ୍ତ୍ରଣ ପାଇ ରଜାଙ୍କ ଲୋକବାକ ରଜାପୁଅର କାହିଁକି ଏପରି ଦୁର୍ବୁଦ୍ଧି ହେଲା

ଠଉରେଇ ପାରିଲେ ନାହିଁ । ସମସ୍ତେ ଭାବିଲେ ତା କପାଳରେ ଆହୁରି ଲେଖିବସା ଅଛି ।

ଏହାପରେ କ'ଣ କରିବ ଏଇ ଚିନ୍ତା ରଜାପୁଅକୁ ଘାରିଲା । ସେ ମୁଣ୍ଡରେ ହାତଦେଇ ବସିଲା । ଏହି ସମୟରେ ଘରେ ଗୋଟେ ଶବ୍ଦ ଶୁଣି ଚମକିଲା । ଦେଖିଲା ମାଙ୍କଡ଼ ତାକୁ ଡାକୁଛି । ସେ ମାଙ୍କଡ଼କୁ କହିଲା, "ସାହାଜାଦା (ରଜାପୁଅ ଏଇ ନାଁରେ ତାକୁ ଥଟାରେ ଡାକେ) ତୁମେ ମୋତେ ବଡ଼ ମୁସ୍କିଲରେ ପକାଇଲ । ତୁମ କଥାରେ ମୁଁ ବାପାଙ୍କୁ ପାତ୍ରମିତ୍ର ସହ ନିମନ୍ତ୍ରଣ କରିଦେଲି । ସେମାନଙ୍କର ଯୋଗ୍ୟ ଅଭ୍ୟର୍ଥନା ପାଇଁ ଧନଜନ କାହିଁ ପାଇବି ? ଏବେ କ'ଣ ମୁଁ କରିବି କୁହ ଭଲା । ତମେ କିଆଁ କଥା କହୁନାହଁ ? ତୁମର ଜିଭ ନାହିଁ ନା କ'ଣ ? ମାଙ୍କଡ଼ ପୂର୍ବପରି କଥା କହିଲା ନାହିଁ । ତା ମନରେ ଘୋର ସନ୍ଦେହ ହେଲା । ସେତେବେଳେ ଯାହା ଶୁଣିଥିଲା ମାଙ୍କଡ଼ଠାରୁ ତା କ'ଣ ସପନରେ ଶୁଣିଥିଲା ? ନାଁ ଆକାଶବାଣୀ ହୋଇଥିଲା । କଥା କହିବାକୁ ତାକୁ କେତେ ଫୁସୁଲାଫୁସୁଲି କଲା । ଶେଷରେ ଦେଖିଲା, ସେ ଖଣ୍ଡେ ଖପରା ଧରିଛି । ସେ ଖଣ୍ଡ ନେବାକୁ ତାକୁ ଠାରୁଛି ! ରଜାପୁଅ ସେଖଣ୍ଡ ଆଣି ଦେଖି ଅବାକ୍ ହେଲା । ଦେଖିଲା ସେଥିରେ ମାଇପି ହାତ ଅକ୍ଷରରେ ଲେଖାଅଛି, "ମୋ କଥାକୁହା ପାଇଁ ବ୍ୟସ୍ତ ହୁଅନା । ମୋତେ ଯେଉଁଠୁ ଆଣିଥିଲ ସେଠାକୁ ଯାଅ । ସେ ଗଛ କୋରଡ଼ ଭିତରକୁ ଏ ଖଣ୍ଡ ଫିଙ୍ଗି ଦେବ । ସେଠି ଉତ୍ତର ପାଇଁ ଅପେକ୍ଷା କରିବ ।"

କ'ଣ କରିବ ନ କରିବ ରଜାପୁଅ କିଛି ସମୟ ଭାଳି ବସିଲା । ଶେଷରେ ତା ସାହାଜାଦା ଯାହା ଲେଖିଛି ତାହା କରିବାକୁ ସ୍ଥିର କଲା । ଫଳାଫଳ ଯାହାହେଲେ ହେବ ପଛକେ । ଏଥିରେ ନିଶ୍ଚୟ କିଛି ରହସ୍ୟ ପୂରି ରହିଛି । ଦେଖାଯାଉ କ'ଣ ହେଉଛି ଭାବି ତା

ସ୍ୱେଚ୍ଛାର କଥା ରଖିବାକୁ ଗଲା । ଯଦିଓ ତା ମନରେ ଆଦୌ ବିଶ୍ୱାସ ନ ଥିଲା ଯେ ତା ସାହାଜାଦୀ ତାକୁ ସତରେ ସାହାଯ୍ୟ କରି ପାରିବ, ତଥାପି ଖପରାଖଣ୍ଡିକ ଧରି ଗଛ ନିକଟକୁ ଯିବାକୁ କିଛି ଶଙ୍କା କଲା ନାହିଁ । ସହର ବାହାରକୁ ଯାଇ ସେ ଗଛକୁ ଖୋଜିଲା । କିଛି ସମୟପରେ ସେ ଗଛକୁ ଠଉରେଇଲା । ସେ ଗଛ ହଜିବା କଥା ନୁହେଁ । ତାହା ଏକ ବିରାଟ ପୁରାତନ ବରଗଛ । ସେ ଗଛର ଡାଳ ଓ ଓହଳ କୋଶକ ବାଟ ଲମ୍ବିଛି । ବହୁ କୁଞ୍ଜ ତିଆରି ହେଲାପରି ହୋଇଛି । କୋରଡ଼ ଥିବା ଗଛଟି ଦୁଇଶହ ହାତ ମୋଟା ହେବ । ରାଜପୁଅ ଗଛ କୋରଡ଼ ଭିତରକୁ ଖପରାଟି ଫିଙ୍ଗି ଦେଲା । କ'ଣ ଘଟିବ ଦେଖିବାକୁ ଚକେଇ ରହିଲା । କେତେ ମିନିଟ ପରେ ଏକ ଦିବ୍ୟସୁନ୍ଦରୀ ସବୁଜ ପୋଷାକ ପିନ୍ଧି ତା ଭିତରୁ ବାହାରିଲା । ସେ ରାଜକୁମାରକୁ ତା ପଛେ ପଛେ ଯିବାକୁ ଡାକିଲା । କାରଣ ଅପ୍ସରୀମାନଙ୍କ ରାଣୀ ତାକୁ ସାକ୍ଷାତ ପାଇଁ ଡକାଇଛନ୍ତି । ରାଜପୁଅ ଗଛରେ ଚଢ଼ି କୋରଡ଼ ଭିତରକୁ ପଶିଲା । ଅନ୍ଧାରରେ ଦରଣ୍ଡି ଦରଣ୍ଡି କିଛି ସମୟ ଗଲାପରେ, ହଠାତ୍ ଉଜ୍ଜ୍ୱଳ ଆଲୁଅରେ ତା ଆଖି ଝଲସି ଉଠିଲା । ଦେଖିଲା ଗୋଟିଏ ଅତି ଅପୂର୍ବ ସୁନ୍ଦର ବଗିଚା । ତା'ର ଶେଷରେ ଅତି ଚମତ୍କାର ଏକ ନଅର । ସେ ଗଛସବୁ ସୁନାର ; ସେଥିରେ ସବୁ ହୀରା, ନୀଳା, ମୋତି, ମାଣିକ୍ୟ ଓହଳିଛି । ଗଛସବୁ ଧାଡ଼ି ଧାଡ଼ି ହୋଇ ଲଗାଯାଇଛି । ତା ମଝିରେ ଝରଣା ବୋହି ଯାଉଛି । ସେ ପାଣି ଅମୃତଠାରୁ ବଳି ସୁଗନ୍ଧ ବାସନା ହେଉଛି । ସେ ଜଳ କାଚଠାରୁ ସ୍ୱଚ୍ଛ ଓ ନିର୍ମଳ । ସେଥିରେ ଖେଳୁଥିବା ବିଚିତ୍ର ମାଛସବୁ ଡଳ ଡଳ ଦେଖା ଯାଉଛନ୍ତି । ତା ଭିତରେ ପଡ଼ିଥିବା ମୋତି ମାଣିକ୍ୟ ଝଟକି ଦିଶୁଛି । ମୟୂର, କୋକିଳ, ଶୁକ, ଶାରୀ ପକ୍ଷୀମାନେ ଡାଳମାନରେ ଗାନ କରୁଛନ୍ତି ।

ମଧୁର ଦକ୍ଷିଣା ପବନ ଗଛପତ୍ର ହଲାଇ ସୁଲୁ ସୁଲୁ ବହୁଛି । ଏ ପୁରର ଆଲୁଅ ସବୁ ଅତି ଅପୂର୍ବ ଓ ବିଚିତ୍ର ଢଙ୍ଗର ଶୋଭା ପାଉଛନ୍ତି । ପ୍ରତି ମିନିଟରେ ରଙ୍ଗ ବଦଳୁଛି । ରାଜପୁଅ ଭାବିଲା ଏଠି ବୋଧେ ଗୋଷ୍ଠିନ ସଜା ହୋଇଛି । ବଗିଚ୍ଚ ଶେଷରେ ଗୋଟିଏ ବଡ଼ ପୋଖରୀ ଅଛି । ତା'ର ଜଳ ସୁନାପରି ଝକମକ କରୁଛି । ସେ ଜଳ ଉପରକୁ ଉଠୁଛି । ପବନରେ ଛିଟିହୋଇ ପଡୁଛି । ତା'ର ସ୍ପର୍ଶରେ ଓ ସୁଗନ୍ଧରେ ଦେହ ଓ ମନ ଶୀତଳ ଓ ଆରାମ ବୋଧ କରୁଛି । ଝରଣାର ଶେଷକୁ ଗୋଟିଏ ଧଳା ଶଙ୍ଖମଲ ପଥରର ନଅର ଅଛି । ସେଥିକୁ ବାରଗୋଟି ଦୁଆର ଅଛି । ସିଂହଦ୍ୱାର ବାଟେ ରାଜପୁଅ ସୁନା ପାହାଚରେ ଗଲା । ଭିତରକୁ ଗୋଡ଼ଦେଲା ମାତ୍ରେ ଅତି ଅପୂର୍ବ ଓ ବିଚିତ୍ର ଦୃଶ୍ୟ ଦେଖିଲା । ରାଜପୁଅ ସେଥିରେ ନିର୍ବାକ୍ ଓ ନିଶ୍ଚଳ ହୋଇଗଲା । ଏଭଳି ବିଚିତ୍ର ସୁନ୍ଦର ଦୃଶ୍ୟ ଚମତ୍କାର ସାଜସଜା ତା ଜୀବନରେ କେଉଁଠି ଦେଖି ନ ଥିଲା । କମ୍ବା ମନରେ ଏପରି ଦୃଶ୍ୟର କଳ୍ପନା କରି ନ ଥିଲା । ସେ ଆହୁରି ଅଧିକ ଆଚମ୍ବିତ ହେଲା, ସିଂହାସନରେ ବସିଥିବା ନାରୀକୁ ଦେଖି । ତା'ର ଅଲୁହା ଅକଳା ରୂପ ଓ ଶୋଭା ଦେଖି ରାଜପୁଅ ବିହ୍ୱଳ ହୋଇ-ଗଲା । ତା'ର ଗତି ଥମିଗଲା । ଆଗକୁ ପାଦ ଉଠିଲା ନାହିଁ । ସେ ଅପୂର୍ବ ସୁନ୍ଦରୀ ଦିବ୍ୟ ରୂପସୀ ନାରୀ ବସିବାକୁ ଠାରି ଦେଲା । ରାଜକୁମାର ତା'ର ଆସନ ଗ୍ରହଣ କଲା । ସେ ସୁନ୍ଦରୀ ସୁକୁମାରୀ ତା ବୀଣାଝଙ୍କଣା ସ୍ୱରରେ କହିଲା, "ମୁଁ ତୁମର ସବୁ ହାଲହଇକତ ଜାଣେ । ବ୍ୟସ୍ତ ହୁଅ ନାହିଁ । ଘରକୁ ଯାଅ ନିଶ୍ଚିନ୍ତରେ । ଦେଖିବ, କାଲି ମୁଁ ତୁମ ବାପା ଓ ତାଙ୍କର ସବୁ ପାରିଷଦଙ୍କର ଯୋଗ୍ୟ ଅଭ୍ୟର୍ଥନାର ବ୍ୟବସ୍ଥା କରିଦେବି । ମୋର ଚାକରମାନଙ୍କୁ ତାହା ବୁଝାଇବାକୁ ମୁଁ ଆଦେଶ ଦେଇ ଦେଇଛି । ରାଜପୁଅ ଅଧିକ କାବା

ହୋଇ ଭକ୍ତିଭରେ ଜୁହାର କରି ଫେରିଲା ।

ସେ ନଅରକୁ ଫେରିଯାଇ ତା ସାଙ୍ଗାଜାଙ୍ଗ ଆଗରେ ତା'ର ଅପୂର୍ବ ଅନୁଭବ କଥା ବନେଇଚୁନେଇ କହିଲା । ସଭିଏଁ ତାକୁ ତୂଳ ମାଡ଼ିନ । ଦିନରେ ଦେଖି ଆସିଥିବା ଅପୂର୍ବ ଦୃଶ୍ୟ, ଉପମାଶୂନ୍ୟ ରୂପସୀ ନାରୀ ମନରେ ଆଖିରେ ନାଚୁଛି । ରାତି ପାହିଲା, ରାଜାପୁଅ ମନ ଛନ ଛନ, ଅପ୍ସରୀ ତା କଥା ରଖିଲା କି ନାହିଁ ଏଇ ଭାବନା । ନଅରରୁ ବାହାରିପଡ଼ିଲା ମାତ୍ରେ ନାନା ବିଚିତ୍ର ଦୃଶ୍ୟ ତା



ଆଖିରେ ପଡ଼ିଲା । ମାତ୍ର କାଲି ରାତିରେ ସାରା ଶବଦ ମୋଟେ ନ ଥିଲା, ସେଠି ଆଜ ଚହଳ ଗହଳରେ ଉଚ୍ଛୁଳ ଉଠୁଛି । ଦୁଇଧାଡ଼ି ଗଛ ତା ନଅରଠୁ ରାଜାଙ୍କ ନଅର ଯାଏ ଲାଗିଯାଇଛି । ଲାଲ

ଟହଟହ ପାଚିଲା ଫଳ ସବୁ ସେଥିରେ ଓହଳିଛି । ଗଛ ଦୁଇକଡ଼ରେ ଝରଣା ବୋହି ଯାଉଛି । ସୁନା ରୁପାର ଧାଡ଼ବନ୍ଧା ପାହାଡ଼ ସବୁ ରାସ୍ତାର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଲମ୍ବି ଯାଇଛି । ରାସ୍ତା ଉପରେ କିଛି କିଛି ଛଡ଼ାରେ କୁଞ୍ଜସବୁ ସଜା ହୋଇଛି । ସେଥିରେ ନାନା ସୁନ୍ଦର କଥାମାନ ଲେଖା ହୋଇଛି । ନାନା ରଙ୍ଗର ନାନା ଆକାରର ପତାକାମାନ ଫରଫର ଉଡୁଛି । ଗଛ ମୂଳରେ ନାନା ଜାତିର ଦୋକାନବଜାର ବସିଛି, ଲୋକେ ସବୁ କିଣାବିକା କରୁଛନ୍ତି । ରାସ୍ତାର ଦୁଇକଡ଼ରେ ବାଜାକାରମାନେ ନାନା ପ୍ରକାର ବାଜା ବଜାଉଛନ୍ତି । ଘମ୍ବୁ ପକାଇ ନାଟୁଆମାନେ ନାଚ କରୁଛନ୍ତି । ଅସୁମାର ନରନାରୀ ପିଲାଛୁଆ ସବୁ ନାଚ ଗୀତ ଦେଖୁଛନ୍ତି ଶୁଣୁଛନ୍ତି । ରାଜାପୁଅ ଯେତିକି ଆଗେଇଲେ ସେତିକି ନୂଆ ନୂଆ ଅଘଟଣ ଘଟଣାମାନ ଦେଖିଲେ, ଶୁଣିଲେ ।

ନଅରକୁ ଫେରିଆସି ରାଜାପୁଅ ଚହଟ ଚହଟ ବଳି ଆଚମ୍ବିତ କଥାମାନ ଦେଖିଲେ । କେତେଘଣ୍ଟା ଆଗରୁ ଯେଉଁ ଘରଦୁଆର ଶୂନ୍‌ଶାନ୍ ଥିଲା, କାହାରି ସାଗିରବାର ନ ଥିଲା, ସେଠି କେତେ କାମଧନ୍ଦା ହେଉଛି । ଚାକରବାକରମାନେ ଘରବାହାର ଯୁରିଆଡ଼େ କାମରେ ବ୍ୟସ୍ତ । ପ୍ରାୟ ଦଶକୋଡ଼ିଏ ହଜାର ଲୋକଙ୍କର ଚର୍ଚ୍ଚା-ବର୍ଚ୍ଚା ପାଇଁ ଆୟୋଜନ ହେଉଛି । ସୁନାର ଥାଳିଗାଡ଼ିଆରେ ଖାଦ୍ୟସବୁ ବଢ଼ା ହେଉଛି । ତା ବାସନାରେ ଘରଦ୍ୱାର ମହକୁଛି । ଘରସବୁ ଝଟକ ସାଜସଜା ହୋଇଛି । ଘରବାହାର ସବୁଆଡ଼େ ଚାନ୍ଦୁଆମାନ ଟଣା ହୋଇଛି । ସେଥିରେ କେତେ ହୀରାମାଳା ଖଞ୍ଜା ଯାଇଛି । ଠାଏ ଠାଏ ଗାଆଣ ବାଜଣାର ମଧୁର ଲହରୀ ଗଗନ-ପବନ ଆମୋଦିତ କରୁଛି । ସବୁଆଡ଼େ ବାସନାଫୁଲ ପେଣ୍ଡାମାନ ଲଟକା ହୋଇଛି । ତା'ର ବାସନାରେ ନଅରସାରା ମହକୁଛି ।

ରଜାପୁଅ ଏସବୁ ସଜାସଜ ଓ କାମଧନ୍ଦା ଦେଖୁଥିଲାବେଳେ ଜଣେ ବାମିକା ପୋଷାକ ପିନ୍ଧା ଚାକର ଆସି ଜଣାଇଲା ଯେ ରଜା ତାଙ୍କ ପାତ୍ରମନ୍ତ୍ରୀଙ୍କ ଗହଣରେ ବିଜେ କରୁଛନ୍ତି । ରାଜକୁମାର ବାଟକୁ ଯାଇ ରଜାଙ୍କୁ ତାଙ୍କ ସୈନ୍ୟସାମନ୍ତ ଗହଣରେ ରଙ୍ଗ ମହଲକୁ ପାଛୋଟି ଆଣିଲା । ରଙ୍ଗ ମହଲର ସଜାସଜ ଦେଖି ଅତି ଚମତ୍କାର ହୋଇଛୁ । ଅତିଥିମାନଙ୍କୁ ଖୁବ୍ ବଢ଼ିଆ ଖାଦ୍ୟପେୟରେ ସନ୍ତୁଷ୍ଟ କରାଗଲା । ଖିଆପିଆ ସରିବାରୁ ଯେଉଁସବୁ ସୁନାଥାଳ ହୀରଗିନାରେ ଖାଉଥିଲେ ସେଗୁଡ଼ିକୁ ନେବାକୁ ରାଜକୁମାର ସଭିଙ୍କୁ ଅନୁରୋଧ କଲା । ରାଜକୁମାରର ଏ ପ୍ରକାର ଅସାଧାରଣ ଉଦାରତା ଦେଖି ସମସ୍ତେ ଆବାକାବା ହୋଇଗଲେ ଓ ତାକୁ ଖୁବ୍ ପ୍ରଶଂସା କରିବାକୁ ଲାଗିଲେ ।

ରାଜକୁମାରକୁ ରଜା ଡକାଇ କହିଲେ, "ବାପ, ତୁ ମୋ ଧନ ସମ୍ପତ୍ତିଠାରୁ କୋଟିଗୁଣେ ଏ ଧନ ବିଭବ କେଉଁଠୁ ଆଣିଲୁ ତାହା ମୁଁ ଜାଣିବାକୁ ଚାହେଁନା । ଆଜିର ମଶୋହିରେ ଯେ ଖାଦ୍ୟପାନୀୟର ବ୍ୟବସ୍ଥା କଲୁ, ଏଭଳି ଅପୂର୍ବ ଦ୍ରବ୍ୟ ମୋ ଜୀବନରେ ଚାଖି ନ ଥିଲି । ଏହାକୁ କଏ କପରି ରୋଷେଇ କଲେ ତାହା ଜାଣିବା ମୋର ଇଚ୍ଛା ନାହିଁ; କିନ୍ତୁ ମୋର ଗୋଟିଏ ମାତ୍ର ଅଭିଳାଷ ଯେ ତୋ ଜୀବନର ସଙ୍ଗିନୀକୁ ଟିକେ ଦେଖିବି ଓ କଲ୍ୟାଣ କରି ଚାଲିଯିବି । ଏହାଶୁଣି ରାଜକୁମାର କହିଲା, "ଯେ ଆଜ୍ଞା ମହାରାଜ, ହଜୁରଙ୍କ ଆଦେଶ ଅବଶ୍ୟ ପାଳନୀୟ ।" ଏହାକହି ରଜାପୁଅ ମାଙ୍କଡ଼କୁ ଆଣିବାକୁ ଅନ୍ଦର ମହଲକୁ ଗଲା । ତା'ର ଭୟ ଥରୁଥାଏ । ଘର ମାଙ୍କଡ଼କୁ କପରି ସଭାରେ ଦେଖାଇବ । ତାକୁ ଲୋକେ ଦେଖି କେତେ ହସିବେ, ଟାହିଟାପରା କରିବେ । ବାପାଙ୍କ ଆଦେଶ, ନ ଦେଖାଇବ ବା କପରି ? ନିଧାର୍ଯ୍ୟ ଦେଖାଇବ ।

ରଜାପୁଅର ପାଗଳାମି ଓ ଏକଜିଦଖିଆ ପଣ ଭାଙ୍ଗିବାକୁ ରଜା ଏ ବୋହୂ ଦେଖା ଫିକର କରିଥିଲେ ।

ରଜାପୁଅ ତା'ର ସାହାଜାଦି ରହୁଥିବା ଘରକୁ ଧୀରେ ଧୀରେ ଗଲା । କବାଟ ଖୋଲିଲା । ଯାହା ଦେଖିଲା ଆଖିବୁଜି ହୋଇଗଲା । ଘର ଆଲୁଅରେ ଝଲସି ଉଠୁଛି । ଥପ୍ପ ଧରି ନିରେଖି ଚାହିଁଲା । ଗଛ ଭିତରେ ଯେଉଁ ଅପ୍ସରା ରାଣୀକୁ ଦେଖିଥିଲା, ସେ ଏଠି ସେହି ସିଂହାସନରେ । ରଜାପୁଅ ତା ମାଙ୍କଡ଼କୁ ନ ଦେଖି ଏଣେତେଣେ ଉଣ୍ଡିଲା; କିନ୍ତୁ ପାଇଲା ନାହିଁ । ରଜାପୁଅର ବ୍ୟାକୁଳତା ଦେଖି ଅପ୍ସରା କହିଲା, "ରାଜପୁତ୍ର, ତୁମର ଦର୍ଶନ ପାଇଲାବେଳୁ, ତୁମକୁ ଶୟନେ ସ୍ୱପନେ ଜାଗରଣେ ମୁଁ ଝୁରୁଛି । ତୁମ ସାହାଜାଦି ବାନରକୁ ମୁଁ ଫେରାଇ ଦେଇଛି । ମୁଁ ତୁମର ସେବା ପାଇଁ ହାଜର ହୋଇଛି । ଦୟାକରି ମୋତେ ଆଶ୍ରା ଦିଅ ।" ଏକଥା ଶୁଣି ରାଜକୁମାର ଦୁଃଖରେ ରାଗରେ ଥାଥା ମାମା ହୋଇ କହିଲା, "କ'ଣ କହ ରାକ୍ଷସୀ, ଯାହାଠି ମୋର ସମସ୍ତ ସ୍ନେହଶ୍ରଦ୍ଧା ଅର୍ଜାଡ଼ି ଦେଇଛି, ତାକୁ ଛାଡ଼ିବାକୁ ମୋତେ ଉପଦେଶ ଦେଉଛ ? ତୁମର ଏ ସୁନ୍ଦର ରୂପ ଦେଖି ମୁଁ ମୋର ସତ୍ୟ ଲଙ୍ଘନ କରି ନ ପାରେ । ହାୟ ହାୟ, ମୋର ତୁମ ପ୍ରତି ଅତି ମହତ ଧାରଣା ଥିଲା । କି ଭୁଲ୍ ମୁଁ କରିଛି ସତେ ?" ପୁଣି ଅପ୍ସରୀ ମୁରୁକି ହସା ଦେଇ କହିଲା, "ରାଜପୁତ୍ର, ତୁମେ ମୋ ରୂପରେ ନ ଭୁଲିପାର ସତ୍ୟ; କିନ୍ତୁ ମୋ ପ୍ରତି ତୁମର ଅବଶ୍ୟ କର୍ତ୍ତବ୍ୟ ଅଛି । ମୁଁ ତୁମର ଯେତେ ଉପକାର କରିଛି, ତାହା ତୁମେ ଅବଶ୍ୟ ବିଚାରକୁ ନେବ । ଦେଖ ତୁମ ପିତାଙ୍କ ଅଭ୍ୟର୍ଥନାରେ କେତେ ପରିଶ୍ରମ ହୋଇଛି, ତାଙ୍କୁ ଯେ ଭୋଜି ଦିଆଯାଇଛି, ତାହା ମଣିଷଙ୍କ କଥା ଦୂରେଥାଉ, ଦେବତାମାନେ ଦେଖି ନ ଥିବେ, ଶୁଣି ନ ଥିବେ । ରାଜକୁମାର, ମୋତେ ଆଶ୍ରା ଦିଅ, ଦୁନିଆର ସମସ୍ତ

ଧନଦୌଲତ ତୁମ ପଦତଳେ ଲୋଟାଇ ଦେବ ।” ରାଜାପୁଅ କହିଲା, “ଅପ୍‌ସରୀ, ତୁମକୁ ଏସବୁ ଦେବାକୁ ମୁଁ ଚାହିଁ ନ ଥିଲି । ତୁମେ ମୋଠୁ ମୋ ବାନରୀକୁ ଛଡ଼ାଇ ନେବାକୁ ଏ ଫନ୍ଦ କରିଛ । ଦୟାକରି ମୋ ସାହାଜାଦୀକୁ ଫେରାଇଦିଅ । ମୁଁ ତୁମର ଋଣ ପରିଶୋଧ କରିବାର ଜୀବନସାରା ନୌକରି ଖଟିବ ପଛେ ।” ଏହା କହି ରାଜପୁତ୍ର ତା’ର ଗୋଡ଼ତଳେ ବସିଗଲା । ତହୁଁ ଅପ୍‌ସରୀ ସିଂହାସନରୁ ଉଠି ଆସି ଅତି ସ୍ନେହଶ୍ରଦ୍ଧା ଓ ଭକ୍ତିରେ ହସି ହସି କହିଲା, “ରାଜପୁତ୍ର, ମୁଁ ତୁମର ସେହି ପ୍ରିୟ ସାହାଜାଦୀ, ମୁଁ ତୁମର ସତ୍ୟ ଓ ସ୍ନେହଶ୍ରଦ୍ଧା ପରୀକ୍ଷା କରିବାକୁ ବାନରୀ ରୂପ ଧରିଥିଲି । ଦେଖ, ମୋ ମାଙ୍କଡ଼ ଚମଡ଼ା ସେ ଘରକଣରେ ପଡ଼ିଛି । ସେ ଠାରିଦେବା ଘରକଣରେ ମାଙ୍କଡ଼ ଚମଡ଼ାଟି ଦେଖିବାକୁ ପାଇଲା । ଏବେ ରାଜାପୁଅର ଆନନ୍ଦର ସୀମା ରହିଲା ନାହିଁ ।

ଅପ୍‌ସରୀ ରାଜାପୁଅର ହାତ ଧରି ସିଂହାସନକୁ ଉଠାଇନେଲା । ଦୁହେଁ ସେଥିରେ ବସିଲେ । ଅପ୍‌ସରୀ ତିନଥର କହିଲା, “ଉଠ ଉଠ ଉଠ ।” ଏତିକ କହିବାରେ ସିଂହାସନଟି ଉପରକୁ ଉଠିଗଲା । ରାଜା ଓ ଅତିଥିମାନେ ବସିଥିବା ମୋତିମାଣିକ୍ୟର ରଙ୍ଗମହଲକୁ ଶୂନ୍ୟେ ଶୂନ୍ୟେ ଚାଲିଗଲା । ଦୁହେଁ ସିଂହାସନରୁ ଓହ୍ଲାଇ ରାଜାଙ୍କ ପାଦ ଛୁଇଁ ପ୍ରଣାମ କଲେ । ସ୍ୱାଙ୍କୁ ଦେଖି ରାଜା ଓ ପାତ୍ରମନ୍ତ୍ରୀମାନେ ତାଜୁବ୍ ହୋଇଗଲେ । ମାଙ୍କଡ଼କୁ ଦେଖି ହସିବାକୁ ଯେଉଁମାନେ ଅପେକ୍ଷାରେ ଥିଲେ, ହତାଶ ହେଲେ । ଏ ଦୃଶ୍ୟରେ ସେମାନେ କାଠ ହୋଇଗଲେ । କାହାରି ପାଟିତୁଣ୍ଡ ଫିଟିଲା ନାହିଁ । ରାଜା ଯାହାକୁ ଦେଖି ହସିବାକୁ ଆସିଥିଲେ, ତାକୁ ଦେଖି ଅଧିକ ଖୁସି ହେଲେ । ଅଧିକ ଉପହାର ଦେଲେ । ସେହିଦିନୁ ସବୁଆଡ଼େ ରାଇଜଯାକ ଅପ୍‌ସରାର ଅପୂର୍ବ ରୂପ ଲାବଣ୍ୟ କଥା ତରବରିଭ

ବାଜଲା । ରଜାପୁଅର ଦୃଢ଼ପଣର ପ୍ରଶଂସା ସବୁରି ମୁହଁରେ ଶୁଣାଗଲା ।

ଅନ୍ୟ ରଜାପୁଅମାନେ ସାନଭାଇର ଏ ସୌଭାଗ୍ୟ ଦେଖି ସହି ପାରିଲେ ନାହିଁ । ସେମାନେ ତାକୁ ସବୁଦିନେ କହିଲେ, "ଦେଖ-ଭାଇ, ତୋ ସ୍ତ୍ରୀ ଗୋଟିଏ ଅପ୍‌ସରା, ସେ ମଣିଷଙ୍କ ପାଖରେ ସବୁଦିନେ ରହିବା ଭରସା ନାହିଁ । ମନ ପାଇଛୁ ରହିଛୁ । ଅସଜ ସଜ କ'ଣ ଦେଖିଲେ ଚାଲିଯିବ । ଆମେ ଶୁଣୁଛୁ, ସେ ପରୀର ସେ ମାଙ୍କଡ଼ ଖୋଳଟା ତା ଘରେ ଅଛି । କାହିଁକି ସେଟା ରଖିଛି । ତା ମନ କେଉଁଦିନ କ'ଣ ହେବ ବୋଲେ ପୁଣି ମାଙ୍କଡ଼ ହୋଇଯିବ ।" ଭାଇମାନଙ୍କ କଥା ରଜାପୁଅ ମୁଣ୍ଡକୁ ବଡ଼ ଘାରିଲା । ସାତ କଥାରେ ସତ୍ୟ ଭୁଲେ । ପାଞ୍ଚମୁଖରେ ଛେଳିବ କୁକୁର ହୁଏ । ବଡ଼ ଭାଇ-ମାନଙ୍କ କଥାରେ ସେ ଭୁଲିଗଲା । ଦିନେ ସେ ମାଙ୍କଡ଼ ଖୋଳଟା ନେଇ ଜଳନ୍ତା ଚୂଲିରେ ପକାଇଦେଲା ।

ଚଟାପଟ କେତେ ହାଉଳି ହେବାର ସେ ଶୁଣି ପାରିଲା । "ମୁଁ ପୋଡ଼ିଗଲି, ପୋଡ଼ିଗଲି । ମୋ ଦେହ ସିଝିଗଲା, ସିଝିଗଲା ।" ହୁଲା ହୁଲା କଥାଁ ଭିତରେ ଏପରି ପାଟି କରି କରି ଅପ୍‌ସରୀଟି କୁଆଡ଼େ ଯେ ଅଦୃଶ୍ୟ ହୋଇଗଲା, ତାହା ଜଣାଗଲା ନାହିଁ । ସାନ ରଜାପୁଅ ଭୟ ଓ ଆତଙ୍କରେ ଶୀହରି ଉଠିଲା । 'କ'ଣ ହେଲା, କ'ଣ ହେଲା' କହି ଘରକୁ ଧାଇଁ ଆଇଲା । ଯାହା ଦେଖିଲା ସେଥିରେ ତା'ର ହାଲକ ଶୁଖିଗଲା । ଶୋକସାଗରରେ ବୁଡ଼ିଗଲା । ଦେଖିଲା ସବୁ ସାଜସଜା, ହାଟବଜାର, ଗଡ଼ପଡ଼ ଯାହାସବୁ ପରୀ ସଙ୍ଗେ ଆସିଥିଲା, ତା ପଛେ ପଛେ ଉଭେଇଗଲା ।

ରଜାପୁଅ ତା'ର ହୁଣ୍ଡାମି ଓ ଦୁର୍ଭାଗ୍ୟ କଥା ଭାଳେଣି କରି ବସିଲା । ରଜା ଓ ମନ୍ତ୍ରୀମାନେ ଆସି କେତେ ବୋଧବାଧ କଲେ,

ବୁଝାଇଲେ, "ପରୀଟିଏ କ'ଣ ସବୁଦିନେ ମନୁଷ୍ୟକୁ ଆଦର କରିପାରେ ? ତା ପାଇଁ ଦୁଃଖ କର ନାହିଁ । ସେ ଶୂନ୍ୟରୁ ଆସିଥିଲା, ଶୂନ୍ୟକୁ ଚାଲିଗଲା । ତା ଲାଗି କାନ୍ଦି କାନ୍ଦି ସୁନାଦେହ କଆଁ ଚୂନା କରୁଛ ?" ସେ ଯେତେ କହିଲେ ବୋଝିଲେ ରଜାପୁଅ ମନ ମାନିଲା ନାହିଁ । କାହାର କଥା ତା କାନକୁ ଗଲା ନାହିଁ । ପୁଅ କାଳେ ଅତିଶୟ ଦୁଃଖରେ କେଉଁଆଡ଼େ ପଳାଇବ ଅବା ନିଜର କିଛି ଅନିଷ୍ଟ କରିଦେବ ଏହି ଆଶଙ୍କାରେ ରଜା ତା'ର ଗତିବିଧି ଦେଖିବାକୁ କଡ଼ା ପହରା ବ୍ୟବସ୍ଥା କଲେ । ରଜାପୁଅ ତା ନଅରରେ ବନ୍ଦୀ ହୋଇ ରହିଲା । ପରୀର ଖୋଜ୍ ନେବାକୁ କୁଆଡ଼େ ଯାଇପାରିଲା ନାହିଁ ।

ଦିନେ ସେ ଜଗୁଆଳମାନଙ୍କୁ ଫୁସୁଲେଇ, ସେମାନଙ୍କୁ ଭଳେଇ ସହର ବାହାରକୁ ପଳାଇଲା । ଅପ୍‌ସରୀର କିଛି ଠେଉ୍ ପାଇବାକୁ ଆଗେ ସେ ପୁରୁଣା ବରଗଛ ପାଖକୁ ଗଲା । ଦେଖିଲା ବରଗଛ ନାହିଁ, ଗଡାଏ ପାଉଁଶ କେବଳ ଅଛି । ସେଠାରୁ କାନ୍ଦି କାନ୍ଦି ଚାଲିଲା । କପାଳରେ କର ମାରୁଥାଏ । "ହାହାକାର ହାହାକାର" ରଡ଼ି କରୁଥାଏ । ଆଖିରୁ ଧାର ଧାର ଲୁହ ବୋହୁଥାଏ, ଦିନରାତି ବାଟ ଚାଲୁଥାଏ । ଗଛରୁ ଫଳ ଖାଏ, ନଈ ନାଳରୁ ପାଣି ପିଏ । ଭୂଇଁରେ ଆକାଶ ତଳେ ବାଧା ହେଲେ ଶୋଇପଡ଼େ । କେତେ ବଣ ଜଙ୍ଗଲ ପାରହୋଇ ଚାଲିଲା । ଚାଲି ଚାଲି ଗୋଡ଼ ଥକିଲାଣି । ପାଦରେ ରକ୍ତ ଫୁଟିଗଲାଣି । ମନ ବି ହରବର୍ ହେଲାଣି । ତଥାପି ଚାଲିଛି । ଦିନେ ଗୋଟିଏ ବଣରେ ଜଣେ ଲୋକକୁ ଦେଖିଲା । ସେ ଗୋଟିଏ ଗୋଡ଼ରେ ଠିଆ ହୋଇଛି । କାନ୍ଦି କାନ୍ଦି ବୋବାଳି ଛାଡ଼ୁଛି, କହୁଛି, "ମୁଁ ଥରେ ମାତ୍ର ଦର୍ଶନ ପାଇଛି । ଆଉଥରେ

ଦର୍ଶନ ଦିଅ ।" ରାଜପୁଅ ଦେଖିଲା ସେ ଲୋକଟି ତା'ର ପରି ହତଭାଗା । ଦୁଃଖକଷ୍ଟରେ ତା ଅବସ୍ଥା କ୍ଷୀଣ ହେଲାଣି । ଆଖି କୁଆଡ଼େ ପଶିଗଲାଣି । ମୁଣ୍ଡବୋଝଟାକର ହୋଇଛି । ଦେହର ହାଡ଼ ଗଣି ହୋଇ ଯାଉଛି । ନାଁକୁ ମାତ୍ର ଜୀବନ ଅଛି । ତା'ର ଏ ଶୋଚନୀୟ ଅବସ୍ଥା ଦେଖି ରାଜପୁଅ ବଡ଼ ବିକଳ ପାଇଲା । ତା କତିକୁ ଗଲା । ତା'ର ଦୁଃଖ କାହାଣୀ ପଚାରିଲା । ସେ କହିଲା, "ହେ ଦୟାଳୁ ବାଟୋଇ ଭାଇ, ଜାଣ, ମୁଁ ଏକ ରାଜାର ପିଲା । ଶିକାର ପାଇଁ ବଣକୁ ଆସିଥିଲି । ହଠାତ୍ ଗୋଟିଏ ଅପୂର୍ବ ସୁନ୍ଦରୀ ସ୍ତ୍ରୀକୁ ଦେଖିଲି । ତା ଦେହଗୋଟା ନିଆଁ ଜଳୁଛି । "ମୁଁ ପୋଡ଼ିଗଲି, ପୋଡ଼ିଗଲି, ଦେହ ସିଝିଗଲା, ସିଝିଗଲା" କହି ସେ ସୁନ୍ଦରୀ ଏଇବାଟେ ଚାଲିଗଲା । ତାକୁ ଦେଖିଲାବେଳୁ ମୋ ଶିକାର କଥା ଭୁଲିଗଲି । ଏଇଠି ରହିଲି ।" ଏତିକି କହିସାରି ଦୀର୍ଘନିଃଶ୍ୱାସ ପକାଇ ଫେରି କହିଲା, "ବାରେ ମୁଁ ଦର୍ଶନ ପାଇଛି । ଆଉଥରେ ଦର୍ଶନ ଦିଅ ।" ରାଜପୁଅ କହିଲା, "ହାୟ, ହାୟ, ମୁଁ ପାଷାଣ୍ଡ ହତଭାଗା ସେ ଦିବ୍ୟ-ସୁନ୍ଦରୀକୁ ପୋଡ଼ି ପକାଇଛି । ମୁଁ ପାପୀ, ଅଧମ ତା'ର ସ୍ୱାମୀ । କେଉଁବାଟେ ଗଲା ସେ କୁହ ତ ଭାଇ ।" ଲୋକଟି ସେ ଯାଇଥିବା ବାଟଟି ବତାଇଦେଲା । ରାଜପୁଅ ଯିବାକୁ ବାହାରିବାରୁ ସେ ଲୋକ କହିଲା, "ବାଟୋଇ ଭାଇ, ମୁଁ ଠାକୁରଙ୍କୁ ଗୁହାରି କରୁଛି ତୁମେ ତାଙ୍କୁ ବେଗି ପାଅ । ମୋର ଆଉ ଏକ ନିବେଦନ ରହିଲା, ତାଙ୍କୁ ଯଦି ଆପଣ ପାଆନ୍ତି; ମୁଁ ଯେପରି ତାଙ୍କର ଦର୍ଶନ ପାଏ । ମୋ କଥା ଭୁଲି ନ ଯିବାକୁ ମୋର ଏ ଲୁହାଠେଙ୍ଗେଣୀଟି ନିଅ । ଏହାର ଗୋଟିଏ ବିଚିତ୍ର ଗୁଣ ଅଛି । ଏହାକୁ ଯେ ଧରିବ, ସେ ତା କଥା ମାନିବ । ଏହାକୁ ଯାହାକୁ ବାଡ଼େଇବାକୁ କହିଲେ, ସେ ଯେଉଁଠି ଥାଉ, ତାକୁ ଯାଇ ମାରି ସାବାଡ଼ କରିଦେବ । ବିପଦବେଳେ ତୁମର

କାମକୁ ଆସିବ । ସାଙ୍ଗରେ ନେଇଯାଅ ।" ରଜାପୁଅ ତାକୁ ଧନ୍ୟବାଦ ଜଣାଇ ଠେଙ୍ଗାକୁ ନେଇ ସେଠୁ ଚାଲିଲା ।

ପୁଣି କେତେ ଦିନ କେତେ ମାସ ବିତିଗଲା । "ସାହାଜାଦା ସାହାଜାଦା" ଡାକୁଥାଏ । ଭେ ଭେ କାନ୍ଦି ଚାଲିଥାଏ । ମରୁଭୂମି ତା ଡାକର ପ୍ରତିଧ୍ୱନି ଦେଉଥାଏ ।

ବାଲିରେ ଚାଲି ଚାଲି ତା ଗୋଡ଼ରେ କେତେ ଘା ହୋଇଗଲା । ଦିନେ ସେ ତତଲା ବାଲିରେ ଘୋର କଷ୍ଟରେ ଯାଉଥିବାବେଳେ ଏକ ଜାଗାରେ କେତେଗୁଡ଼ିଏ ଗଛ ଦେଖିଲା । ତା ମଝିରେ ଝରଣାଟିଏ ଥିଲା । ଶୋଷରେ ରଜାପୁଅର ତଣ୍ଟି ଶୁଖି ଯାଉଥିଲା । ଟିକିଏ ଥକା ମାରିସାରି ପାଣି ପିଇବାକୁ ଗଛ ଛାଇରେ ବସିଗଲା । କିଛି ସମୟ ବସିଲାପରେ କେହି ବୀଣା ବଜାଇ ମଧୁର ସଙ୍ଗୀତ ଗାଉଥିବାର ଶୁଣିଲା । ଗାଉଣାବାଲାକୁ ଖୋଜି ଖୋଜି ଗୋଟିଏ ବୁଦା ପାଖେ ଲୁଚି ରହିଲା । ଦେଖିଲା ୨୦।୨୨ ବର୍ଷର ସୁନ୍ଦର ଯୁବକଟିଏ । ବୀଣା ବାଦନରେ ଭୋଳ ହୋଇ ରହିଛି । ତା'ର ସଙ୍ଗୀତ ଏପରି ମଧୁର ଓ ମନୋହର ଯେ ପଶୁ ପକ୍ଷୀମାନେ ତା ଚାରିକଡ଼େ ଘେରି ଶୁଣୁଛନ୍ତି । କେହି ଟିକେ ହଲଚଲ ହେବାର ନାହିଁ । ସମସ୍ତେ ମନ୍ତ୍ରମୁଗ୍ଧ ପରି ଶୁଣୁଛନ୍ତି । ଯୁବକ ଯେତେବେଳେ ତା'ର ସଙ୍ଗୀତ ଶେଷ କଲା, ଦୀର୍ଘନିଃଶ୍ୱାସ ଛାଡ଼ି କହିଲା, "ତୁମର ଦର୍ଶନ ଥରେ ପାଇଛି, ଆଉଥରେ ଦର୍ଶନ ଦିଅ ।" ରଜାପୁଅ ଏ ପ୍ରକାର କଥା ଶୁଣି ଚମକି ପଡ଼ିଲା । ରଜାପୁଅ ତା'ର ପରିଚୟ ପାଇବାକୁ ଚାହିଁଲା । ଗାଉଣାବାଲା କହିଲା, "ମୁଁ ଗୋଟିଏ ମହାଜନ ପୁଅ । ମୁଁ ଏହିବାଟେ ଗଲାବେଳେ ଏକ ଦିବ୍ୟ, ଚମତ୍କାର ସୁନ୍ଦରୀଟିଏ ଭେଟିଲି । ତା ଦେହରେ ନିଆଁ ଲାଗିଛି । ସେ 'ମୁଁ ପୋଡ଼ିଗଲି, ପୋଡ଼ିଗଲି, ମୋ ଦେହ ସିଝିଗଲା, ସିଝିଗଲା' ଏପରି ରଡ଼ି କରି

କାହିଁ ଚାଲିଗଲା । ସେହିଦିନଠୁ ମୁଁ ଏଇଠି ରହିଛି । ଏହା ପ୍ରାୟ ଛ'ମାସ ତଳର କଥା ।" ଏହାପରେ ରାଜାପୁଅ ତା'ର ପରିଚୟ ଓ ଇତିହାସ ମହାଜନ ପୁଅକୁ ଜଣାଇଲା । ରାଜାପୁଅ ପୁଣି ସେତେବେଳେ ଯିବାକୁ ବାହାରେ, ମହାଜନ ପୁଅ ତା ବାଣାଟି ତାକୁ ଦେଲା ଓ କହିଲା, "ଏ ବାଣାର ଗୋଟିଏ ଅପୂର୍ବ ଗୁଣ ଏହି ଯେ ତାକୁ ଯେ ଶୁଣିବ ସେ କଣି ହୋଇଯିବ ।" ରାଜାପୁଅ ଧନ୍ୟବାଦ ଦେଇ ତା'ଠୁ ବାଣାଟି ନେଲା ଓ ପରୀକୁ ପାଇଲେ ତାକୁ ଦେଖାଇବାକୁ ସତ୍ୟ କରି ଗଲା ।

ବାଟରେ ନାନା ବିପଦ ଆପଦ ଅସୁମାରି ବାଧାବିଘ୍ନ ରାଜାପୁଅକୁ ଜୁଟିଲା । ସେଥିରେ ମହା ମହା ରଥୀମାନେ ଭୟରେ ଟଳି ପଡ଼ିଥାନ୍ତେ । କିନ୍ତୁ ରାଜାପୁଅ ତା'ର ଲକ୍ଷ୍ୟ ହାସଲରେ ଅଚଳ ଓ ଅଟଳ ରହିଲା । ପରୀର ସନ୍ଧାନରେ ଚାଲିଲା । ଚାଲି ଚାଲି କେତେମାସ ପରେ ଗୋଟେ ପର୍ବତ ଉପରେ ଚଢ଼ିଲା । ସେ ପର୍ବତର ଶିଖ ଆକାଶକୁ ଲାଗିଥାଏ । ସେ ପାହାଡ଼ ଏତେ ଉଚ୍ଚ ଯେ ଦେଖିଲେ ଭ୍ରମ ଟାଙ୍କୁଚି ଉଠିବ । ପାଦ ଖସିଗଲେ ଯାଇ ପାତାଳରେ ପଡ଼ିବ । ପର୍ବତ ଶିଖରେ ପଡ଼ିଥିବା ବରଫ ଧଳା ଚକ୍ ଚକ୍ ଦିଶୁଛି । ରାଜାପୁଅ ସେ ପାହାଡ଼ରେ ଉଠିବାକୁ ଲାଗିଲା । ପାଦ ରହୁ ନ ଥାଏ, ଖସି ଯାଉଥାଏ । ତଥାପି ରାଜାପୁଅ କଷ୍ଟେମଷ୍ଟେ ଯାଇ ପର୍ବତର ଏକ ଶିଖ ଉପରେ ଉଠିଲା । ସେଠି ଶୁଣିଲା ଜଣେ ଅତି ଦୁଃଖରେ କାନ୍ଦୁଛି ଓ କହୁଛି "ମୁଁ ଥରେ ଦର୍ଶନ ପାଇଛି, ଆଉ ଥରେ ଦର୍ଶନ ଦିଅ ।" ଏପରି କହୁଥିବା ଲୋକକୁ ଦେଖିବାକୁ ରାଜାପୁଅ ଚାରିଆଡ଼େ ଚାହିଁଲା । କୁଆଡ଼େ ଦେଖିଲା ନାହିଁ କାହାରିକୁ । ବହୁ ସମୟଯାଏ କାହାକୁ ଦେଖିବାକୁ ନ ପାଇ ବଡ଼ ପାଟିରେ କହିଲା, "କିଏ ଭାଇ ଏ ନିର୍ଜନ ବନରେ ଦୁଃଖରେ କାନ୍ଦୁଛ,

ଦୟାକରି ଏ ଦୁଃଖୀ ଭାଇକୁ ଦେଖାଦିଅ ।” ଏକଥା କହିବା ସଙ୍ଗେ ସଙ୍ଗେ, ଗୋଟିଏ ଦୁଃଖରେ କାତର ଜୀର୍ଣ୍ଣଶୀର୍ଣ୍ଣ ଯୁବକକୁ ଦେଖିଲା । ସେ ପୁଣି ପୂର୍ବପରି ଚିତ୍କାର କଲା । ରଜାପୁଅ ତା ଦୁଃଖର ହେତୁ କ’ଣ ପଚାରିବାରୁ ଯୁବକଟି କହିଲା, “ବର୍ଷକପୂର୍ବେ ମୁଁ ଏଇଠି ଗୋଟିଏ ଅପୂର୍ବ ସୁନ୍ଦରୀ ସ୍ତ୍ରୀ ଦେଖିଥିଲି । ତା ଦେହସାରା ନିଆଁ ଲାଗିଯାଇଛି । ସେ ଚିତ୍କାରି ‘ମୁଁ ପୋଡ଼ିଗଲି, ପୋଡ଼ିଗଲି, ମୋ ଦେହ ସିଝିଗଲା, ସିଝିଗଲା’ କହି କହି ଏଇବାଟେ ଚାଲିଗଲା । ସେହିଦିନୁଁ ମୁଁ ଏଇଠି ବସି କାନ୍ଦୁଛି । ଆଉଥରେ ଦର୍ଶନ ଆଶା କରି ବସିଛି ।” ରଜାପୁଅ କହିଲା, “ମୁଁ ସେହି ହତଭାଗା ରାକ୍ଷସ, ସେ ସୁନ୍ଦରୀକୁ ପୋଡ଼ି ପକାଇଛି । ମୁଁ ତାକୁ ଝୁରି ଝୁରି ଖୋଜିବାରେ ଲାଗିଛି । ମୁଁ ଏବେ ତାକୁ ଖୋଜିବାକୁ ଯାଉଛି । ସେ ଯୁବକ ରଜାପୁଅକୁ ଗୋଟିଏ ଟୋପି ଦେଇ କହିଲା, “ଦୟାକରି ଏ ଟୋପିଟି ନିଅ । ଏହା ତୁମର ଦରକାର ବେଳେ କାମରେ ଆସିବ । ଏହାକୁ ଯେ ପିନ୍ଧିଥିବ, ତାକୁ କେହି ଦେଖିପାରିବେ ନାହିଁ । ଏବେ ତୁମେ ଯେପରି ମୋତେ ଦେଖିପାରିଲ ନାହିଁ ।” ରଜାପୁଅ ଧନ୍ୟବାଦ ଦେଇ ଟୋପିଟି ନେଲା ଓ ପୁଣି ତା କାମରେ ଚାଲିଲା ।

ପାହାଡ଼ ଉପରକୁ ଯେତିକି ଉଠିଲା, ସେତିକି କଷ୍ଟବୋଧ କଲା । ଥଣ୍ଡାରେ ତା’ର ଦେହ ଥରିଲା । ଶୀତରେ ଦେହ କୋଲି ମାରିଗଲା । ନିଃଶ୍ୱାସ ନେବାକୁ ବାଧିଲା । ଏତେ ବାଧାସତ୍ତ୍ୱେ ଯାଉ ଯାଉ ଗୋଟିଏ ଦେଉଳ ଦେଖିଲା । ଦେଉଳଟି ବରଫରେ ତିଆରି । ତା’ର ଖୁଣ୍ଟ ଖିଲଣ ଛାତ ସବୁ ବରଫ । ତା ଭିତରକୁ ଗଲା । ବେଶ୍ ଉଷୁମ ଲାଗିଲା । ଆରାମ ବୋଧକଲା । ଦେଖିଲା ତା ଭିତରେ ଜଣେ ଯୋଗୀ ଶୂନ୍ୟରେ ବସି ଧ୍ୟାନ କରୁଛନ୍ତି । ତାଙ୍କ ଦେହର ଜ୍ୟୋତିରେ ଘର ଆଲୋକିତ ହେଉଛି । ରଜାପୁଅ ତାଙ୍କୁ ଘୋର ଭକ୍ତିରେ

ମୁଣ୍ଡି ଆମାର ହାତ ଯୋଡ଼ିହୋଇ ରହିଲା । କିଛି ସମୟ ପରେ ଯୋଗୀ ଆଖି ଖୋଲିଲେ । ସିଧା ରାଜାପୁଅକୁ ଚାହିଁଲେ । ତାକୁ କହିଲେ, "ରାଜପୁତ୍ର, ମୁଁ ତୁମର ସବୁ ଘଟଣା ଜାଣେ । ତୁମେ ପରୀରାଜାଙ୍କ ଝିଅକୁ ଖୋଜୁଛ । ତାଙ୍କ ନଅର ଏଇ କକେସସ୍ ପର୍ବତର ଶିଖରରେ । ସେ ଆଜଯାଏ ଜାଗିଛି । ବେଗମରେ ବଡ଼ ଜଞ୍ଜାଳ ହେଉଛି । ଏହି ବାସନା ମଲମ ନିଅ । ଏଥିରେ ଆଛା ଆଛା ସାଙ୍ଘାତିକ ପୋଡ଼ା ଘା ଭଲ ହୋଇ ପାରିବ । ଆଉ ଏହି କଠାଉ ହଳକ ନିଅ, ତାକୁ ପିନ୍ଧିଲେ ତୁମ ଇଚ୍ଛା ମୁତାବକ ଥାନକୁ ସେ ନେଇଯିବ । ରାଜାପୁଅ ଅଶେଷ କୃତଜ୍ଞତା ଜଣାଇ ମଲମ ଡବାଟି ଓ କଠାଉ ହଳକ ନେଲା । କଠଉ ହଳକୁ ପରୀରାଇଜକୁ ନେଇଯିବାକୁ ଆଦେଶ କଲା । ତାହା ତତ୍କ୍ଷଣାତ୍ ରାଜାପୁଅକୁ ଶୂନ୍ୟେ ଶୂନ୍ୟେ ପବନ ବେଗରେ ଉପରକୁ ଉଠାଇ ନେଲା । ପରୀରାଇଜରେ ପହଞ୍ଚାଇ ଦେଲା । ରାଜାପୁଅ ସହରବାହାରେ ଗୋଟିଏ ଅଣଆଉ଼ଆ ସ୍ଥାନରେ ବସାକରି ରହିଲା ।

ତା'ପରେ ମୁଣ୍ଡରେ ଟୋପି ପିନ୍ଧି ସହର ଭିତରକୁ ଗଲା । ପରୀରାଇଜର ଅପୂର୍ବ ଦୃଶ୍ୟମାନ ବୁଲି ବୁଲି ଦେଖିଲା । ଟୋପି ଗୁଣରୁ ସେ ସମସ୍ତଙ୍କୁ ଦେଖିପାରୁଥାଏ, ତାକୁ କେହି ଦେଖିପାରୁ ନ ଥାନ୍ତି । ତାହା ଏକ ଅତି ସୁନ୍ଦର ବିରାଟ ସହର । ଏଠାର ଲୋକ ମଣିଷଙ୍କ ପରି ହେଲେମଧ୍ୟ ସେମାନଙ୍କ ଢଙ୍ଗଢାଙ୍ଗ ଚାଲିଚଳଣି ବହୁତ ଭିନ୍ନ । ସେଠି ସମସ୍ତେ ଅତି ଅପୂର୍ବ ସୁନ୍ଦର । ସହର ବୁଲିସାରି ରାଜାପୁଅ ନଅରକୁ ଗଲା । ସେ ଅଦୃଶ୍ୟ ଟୋପି ପିନ୍ଧିଥିବାରୁ ତାକୁ କେହି 'ପ୍ରବେଶ ନିଷେଧ' କଲେ ନାହିଁ । ସେ ଅନ୍ଦର ମହଲକୁ ସମସ୍ତଙ୍କ ଅଦୃଶ୍ୟରେ ଗଲା । ତା'ର ସ୍ତ୍ରୀ ଅପ୍‌ସରୀକୁ ଦେଖିଲା । ସେ ଜୀର୍ଣ୍ଣଶୀର୍ଣ୍ଣ ହୋଇ ରୋଗିଣୀ ଅବସ୍ଥାରେ ବିଛଣାରେ ପଡ଼ି ରହିଛି ।

ରଜାପୁଅ ତା’ପରେ ସହର ବାହାରକୁ ଚାଲି ଆସିଲା । ମୁଣ୍ଡରୁ ଟୋପି କାଢ଼ି ଦେଲା । ବାବାଜୀ ବେଶ ହୋଇ ବୀଣା ବଜାଇବାକୁ ଲାଗିଲା । ସଙ୍ଗୀତର ମୂର୍ଚ୍ଛନା ପବନର ଢେଉରେ ସାରା ସହର ବ୍ୟାପିଗଲା । ତାହା ଯାହା କାନରେ ପଡ଼ିଲା, ତା ମନ ଆନନ୍ଦରେ ମାତି ଉଠିଲା । ଅପ୍ସରା ଅପ୍ସରୀମାନେ ସଙ୍ଗୀତ ଶୁଣିବାକୁ ଧାଇଁଲେ । ଏ ବିଚିତ୍ର ଯୋଗୀର ବିଚିତ୍ର ବୀଣାଗାନ ବାଦନ କଥା ଅପ୍ସରା ରଜାଙ୍କ କାନରେ ପଡ଼ିଲା । ଘଟଣା ବୁଝିବାକୁ ରଜା ଯୋଗୀ ନିକଟକୁ ଗଲେ । ସେ ମଧ ବୀଣାଗାନରେ ମୁଗ୍ଧ ହୋଇଗଲେ । ରଜା ଯୋଗୀ ଗୋଡ଼ତଳେ ପଡ଼ି କହିଲେ, “ହେ ମହାଭାଗ, ଏ ଅଧମ ଦାସର ଗୁହାରି ଶୁଣିମା ହୁଅନ୍ତୁ । ମୋ ଝିଅଟି ବଡ଼ ବିପଦରେ ପଡ଼ିଛି । ତାକୁ ଏକ ଅଦ୍ଭୁତ ରୋଗ ମଣିଷ ପୋଡ଼ ପକାଇଛି । ହେ ସାଧୁ ମହାଭାଗ, ତାକୁ ଆରୋଗ୍ୟ କରି ଦିଅନ୍ତୁ । ସେ ମୋର ଏକଇରବାଳା, ନୟନପିତୁଳା, ମୋ ବୁଢ଼ାକାଳର ଆଶ୍ରୟ । ତାକୁ ଆରୋଗ୍ୟ କରି ଦିଅନ୍ତୁ । ମହାଭାଗ, ଆପଣ ଆରୋଗ୍ୟ କରି ଦେଲେ, ଆପଣ ଯାହା ଚାହିଁବେ ତାହା ଦେବି । ଏଇ ମୋର ସତ୍ୟ ଓ ଶପଥ ।” ଯୋଗୀବେଶଧାରୀ ରଜାପୁଅ କହିଲା, “ହେ ରାଜନ୍, ଆମେ ସନ୍ନ୍ୟାସୀ, ଆମର କୌଣସି ଗୃହସ୍ଥର ଘରକୁ ଯିବା ନିଷେଧ । ଝିଅକୁ ଏଠାକୁ ଆଣନ୍ତୁ, ଭଗବାନଙ୍କ ନିକଟରେ ତା ପାଇଁ ପ୍ରାର୍ଥନା କରି ଆରୋଗ୍ୟ କରିଦେବା ।” ରଜା ପୁଣି ଅତି ବିନୟରେ କହିଲେ, “ମହାଭାଗ, ଝିଅର ଅବସ୍ଥା ଅତି ଗୁରୁତର । ସେ ଉଠିବସି ପାରୁ ନାହିଁ । ଏଠାକୁ ଆଣିଲେ ତା’ର ଜୀବନ ରହିବ ନାହିଁ । ହେ ଦୟାଳୁ ମହାପୁରୁଷ, କୃପାକରି ମୋ ଦୀନ କୁଟୀରକୁ ବିଜେ କରନ୍ତୁ । ଆପଣଙ୍କ ପଦଧୂଳିରେ ମୋ ଦୀନ କୁଟୀର ପବିତ୍ର ହେଉ ।” ସେ ଅତି ବୈରାଗୀ ସନ୍ନ୍ୟାସୀ ବୋଲି ଦେଖାଇ ପଚାରିଲେ ରଜାଙ୍କ କଥାରେ

ରାଜ ହେଲା ନାହିଁ । ରାଜା ବେଶି ତୋଷାମୋଦ କରିବାପରେ ନଅରକୁ ଯିବାକୁ ମଙ୍ଗିଲା । ତାକୁ ଅପ୍ସରାମାନେ ସୁନାବଟମାନରେ ବସାଇ ବହୁ ଆଦର ସମ୍ମାନରେ ରାଜାଙ୍କ ନଅରକୁ ନେଲେ ଓ ପରୀ ଶୋଇଥିବା ଶଯ୍ୟା ପାଖରେ ପହଞ୍ଚାଇ ଦେଲେ । ସେତେବେଳକୁ ପରୀଟି ନଦରେ ଶୋଇ ପଡ଼ିଥିଲା । ତା ଦେହରେ ମଲମ ଲଗାଇବାକୁ ଯୋଗୀ ଦାସୀମାନଙ୍କୁ ବରାଦ ଦେଲେ । ମଲମ ଦେହରେ ଲାଗିଲା ସଙ୍ଗେ ସଙ୍ଗେ ଘା' ଶୁଖି ଆରୋଗ୍ୟ ହୋଇଗଲା । ସେ ଉଠିଯାଇ ବିଛଣାରେ ବସିଲେ । ଯୋଗୀଙ୍କର ଏ ଅଲୌକିକ କର୍ମ ସହରଯାକ ଡଙ୍କେଡଙ୍କ ହୋଇଗଲା ।

ଅପ୍ସରୀ ରାଜାପୁଅକୁ ଦେଖିଲାମାତ୍ରେ ଚିହ୍ନି ପାରିଲା । ତାକୁ ଡାକିବାକୁ ଆରମ୍ଭ କଲାବେଳକୁ, ପରିଚୟ ନ ଦେବାକୁ ସେ ଠାରି ଦେଲା, କାଳେ କିଛି ଅସୁବିଧା ହେବ ଭାବି । ଝିଅର ଆରୋଗ୍ୟ ଦେଖି ରାଜା ଭାରି ଖୁସି ହେଲେ । ସେ କୃତଜ୍ଞତା ଜଣାଇ ଯୋଗୀଙ୍କୁ କହିଲେ, "ହେ ସାଧୁ ମହୋଦୟ, ଆପଣ ମୋ ଠାରୁ କ'ଣ ପାଇବାକୁ ଚାହାନ୍ତି, କୁହନ୍ତୁ ।" ରାଜାପୁଅ ଏଇଥିପାଇଁ ଅନେଇ ରହିଥିଲା । କହିଲା, "ହେ ଦୟାଳୁ ରାଜନ, ଆପଣଙ୍କ ଝିଅକୁ ମୋତେ ବିବାହ ଦଅନ୍ତୁ ।" ବୈରାଗୀ ସନ୍ନ୍ୟାସୀ ଏପରି ମାଗିବାଟା ଧୃଷ୍ଟତା ଓ ଭଣ୍ଡାମି ଭାବି ରାଜା ରାଗି ଉଠିଲେ, କହିଲେ, "କିଏ ଅଛରେ ! ଏ ଭଣ୍ଡ ବାଷଣକୁ ବନ୍ଦୀ କର । ତା'ର ଭଣ୍ଡାମି ଧରା ପଡ଼ିଛି ଏବେ ।" ରାଜାଙ୍କ ଲୋକମାନେ ଯୋଗୀକୁ ବନ୍ଦୀ କରିବାକୁ ବାହାରିବା ମାତ୍ରେ ସେ ମୁଣ୍ଡରେ ଟୋପି ପିନ୍ଧି ଅଦୃଶ୍ୟ ହୋଇଗଲା । ତା'ର ଲୁହାଠେଙ୍ଗାକୁ ଆଦେଶ ଦେଲା ରାଜାଙ୍କୁ ଓ ତାଙ୍କର ଲୋକଙ୍କୁ ଟାଙ୍କେ ଛେଚିବାକୁ । ଲୁହାଠେଙ୍ଗାଟି ତାହା ହିଁ କଲା । ଶୂନ୍ୟରୁ ଏପରି ମାଡ଼ ଖାଇ ରାଜା ବଡ଼ ଅଥୟ ହୋଇପଡ଼ି କହିଲେ, "ହେ

ମହାଯୋଗି, ଆମ୍ଭମାନଙ୍କୁ କ୍ଷମାକର । ଆମ୍ଭେମାନେ ପାପୀ, ବହୁ ଅପରାଧ କରିଛୁ । ହେ ଠାକୁର, କ୍ଷମାକର ଦର୍ଶନ ଦିଅ । ଆପଣ ଯାହା କହୁଁଛନ୍ତି ତାହା ମୁଁ ଦେବାକୁ ତିନିବାର ସତ୍ୟ କରୁଛି ।'' ରଜାପୁଅ ଦେଖାଦେଇ କହିଲା, ''ଅଯଥାରେ ମୋର ବଳ ଓ କରାମତି ଦେଖାଇଥିବାରୁ ମୁଁ ଦୁଃଖିତ ଓ ଲଜ୍ଜିତ । ଏବେ ଆପଣ ନିଜ ଝିଅକୁ ଓ ତା ସଙ୍ଗେ ଆଉ ତିନି ସୁନ୍ଦରୀ ସେବିକା ଦିଅନ୍ତୁ । ଗୋଟିଏ ସ୍ୱତନ୍ତ୍ର ବିମାନ ଦିଅନ୍ତୁ ଯାହା ପରୀମାନଙ୍କ ଛଡ଼ା କେହି ଗଢ଼ି ଜାଣନ୍ତି ନାହିଁ । ସେଥିରେ ଆମେ ବାପାଙ୍କ ରାଜ୍ୟକୁ ଯିବୁ । ରାଜା ସେଇଲଗେ ତିନିଗୋଟି ସୁନ୍ଦରୀ ଅପ୍‌ସରୀସହ ଝିଅକୁ ବିଚିତ୍ର ସିଂହାସନରେ ବସାଇ ଆଣି ଦେଲେ । ରଜାପୁଅ ସେଥିରେ ବସି ନିଜ ରାଜ୍ୟକୁ ଉଡ଼ି ଉଡ଼ି ଗଲା । ବାଟରେ ସେ ଟୋପି, ବୀଣା ଓ ଲୁହାଠେଙ୍ଗା ସାହାଯ୍ୟ ଦେଇଥିବା ବନ୍ଧୁମାନଙ୍କ ନିକଟରେ ଅଟକି ଥିଲା । ରଜାପୁଅର ଅନୁରୋଧରେ ଯୋଗୀଛଡ଼ା ଆଉ ସମସ୍ତେ ତାଙ୍କ ସଙ୍ଗରେ ତାଙ୍କ ରାଜ୍ୟକୁ ଗଲେ । ସେଠାରେ ସେ ତିନି ବନ୍ଧୁଯାକଙ୍କୁ ତିନି ଅପ୍‌ସରୀଙ୍କୁ ବିବାହ କରାଇଦେଲା । ସେମାନେ ସୁଖରେ ତାଙ୍କ ଦିନ କାଟିଲେ ।

ରଜାପୁଅ, ତା'ର ବାପାଙ୍କୁ ତା ଭାଇମାନଙ୍କ କୁମନ୍ତ୍ରଣା କଥା ଜଣାଇଲା । ରଜା ସେମାନଙ୍କୁ ଅନ୍ଧକୂପରେ ପକାଇ ମାରିଦେବାକୁ ଆଦେଶ ଦେଲେ । କିନ୍ତୁ ରଜାପୁଅ ସେମାନଙ୍କ ଦୋଷ କ୍ଷମା କରିବାକୁ ରଜାଙ୍କୁ ପ୍ରାର୍ଥନା କଲା । ରଜା ସେମାନଙ୍କୁ କ୍ଷମା ଦେଲେ । ଭରଣପୋଷଣ ପାଇଁ ସେମାନଙ୍କୁ ଯଥେଷ୍ଟ ଭତ୍ତା ଦେଲେ । କିନ୍ତୁ ସାନ ରଜାପୁଅ ତା ବାପାଙ୍କ ଗାଦିରେ ବସି ପ୍ରଜାମାନଙ୍କୁ ସୁଖରେ ପାଳିବାକୁ ଲଗିଲା ।

# ହୀରା ଓ ମଣି କଥା

ଅତି ପୂର୍ବକାଳର କଥା । ଏକ ସହରରେ ଜଣେ ଗରିବ ଲୋକ ଥାଏ । ସେ ଘାସକାଟି ପେଟ ପୋଷେ । ପ୍ରତିଦିନ ଜଙ୍ଗଲରୁ ଘାସ ଆଣେ । ତାକୁ ସହରରେ ବିକେ । ସେଥିରୁ ଯାହା ପଇସା ମିଳେ ସେଥିରେ ଡାଲି ଚାଉଳ ପ୍ରଭୃତି କିଣେ । କଷ୍ଟେମଷ୍ଟେ ଯାହିତାହି ଚଳେ । ସେ ସବୁଦିନେ ବଡ଼ଭୋରୁ ଉଠେ । ଘାସ କାଟିବାକୁ ଚାଲିଯାଏ । ଦିନେ ସେହିପରି ଯାଇଛି । ଗୁଡ଼ାଏ ଘାସ କାଟି ସାରିଲାଣି । ତାହା ବାନ୍ଧିବାକୁ ଦଉଡ଼ି ଖୋଜିଲା । ଦେଖିଲାବେଳକୁ ଦଉଡ଼ି ଆଣି ନାହିଁ । ଭୁଲିଯାଇଛି ଆଣିବାକୁ । ବଡ଼ ଅଡୁଆରେ ପଡ଼ିଲା । ଦିନଯାକର ଖଟଣି ବୃଥା ଯିବ ବୋଲି ଦୁଃଖ କଲା କେତେ । ସେ ଦଉଡ଼ି ଚିନ୍ତାରେ ଆନମନ ହୋଇଛି । ତା କେତେ ପାହୁଣ୍ଡ ଆଗରେ ଦଉଡ଼ି ଭଳି କ'ଣ ଗୋଟେ ପଡ଼ିଥିବାର ଦେଖାଗଲା । ସେଟା କ'ଣ ବୋଲି ଦେଖିବାକୁ ଗଲା । ଦେଖିଲା ସେଟା ଗୋଟେ ମଲା ସାପ । ସେଥିରେ ଯାହିତାହି କରି ବାନ୍ଧିନେବା ପାଇଁ ଘାସ ତରବରରେ ତାହା ଆଣିବାକୁ ଗଲା । ଉଠାଇ ଇସ୍ । ଧରିଲାବେଳକୁ ଆଉ ସାପ ନାହିଁ । ସେଟା ଗୋଟାଏ ମଣି । ମହା ମୂଲ୍ୟବାନ୍ ଦରବ । ଦେଖିବାକୁ ଲାଲ କଟକଟ । ଗରିବ ବିଚରା ଆଗ ଚମକି ପଡ଼ିଲା । ହଠାତ୍ କ'ଣ ଏପରି ହେଲା ବୋଲି ଡରିଗଲା । କିନ୍ତୁ ସଙ୍ଗେ ସଙ୍ଗେ ମନ ଦମ୍ଭ କଲା । ତାକୁ ଅତି

ଯତନରେ କାନରେ ବାନ୍ଧିଲା । ସନ୍ଧ୍ୟାକୁ ଘରକୁ ଆଇଲା । ଗରିବ ବିଚରା ତା'ର ମୂଲ୍ୟ ଜାଣେ ନାହିଁ । ଖାଲି ସୁନ୍ଦର ଦରବ ଦେଖି ଭାବିଲା ରାଜଯୋଗ୍ୟ ଦରବ । ତାହା ରାଜାଘରକୁ ମାନବ । ତା ପରଦିନ ସକାଳୁ ସେ ରାଜାଙ୍କ ନଅରକୁ ଗଲା । ରାଜାଙ୍କୁ ତାହା ଭେଟି ଦେଲା । ରାଜା ଏପରି ଅପୂର୍ବ ଦାମିକା ଜିନିଷ ପାଇ ଭାରି ଖୁସି ହେଲେ । ତାକୁ ଅନେକ ଧନ ଦେଲେ । ସେଇ ଧନରେ ତା'ର ଦେହକ ସୁଖରେ କଟିଗଲା । ଆଉ ତାକୁ ଘାସ କାଟିବାକୁ ପଡ଼ିଲା ନାହିଁ ।

ରାଜା ସେ ମଣିଟି ନେଇ ଅନ୍ଦର ମହଲକୁ ଗଲେ । ମଣିଟି ତାଙ୍କ ପାଟରାଣୀକୁ ଦେଲେ । ସେ ଭାରି ଖୁସି ହେଲେ । ରାଣୀ ତାକୁ ଦେଖି ଦେଖୁ ତାହା ଏକ ସୁନ୍ଦର ପିଲା ହୋଇଗଲା । ସତେ ଯେପରି ସେଇଲାଗେ ଜନ୍ମ ହୋଇଛି । ରାଣୀଙ୍କ କୋଳରେ ପିଲାପାଣ୍ଡ କିଛି ନ ଥିଲେ । ସେ ତାକୁ ଅତି ଯତନରେ ପାଳିଲେ । ସ୍ନେହରେ ଗେଲବସରରେ ବଢ଼ାଇଲେ । ମଣିରୁ ସେ ପୁଅ ହୋଇଥିବାରୁ, ତା ନାଁ ଦେଲେ 'ମଣି' । ଦିନକୁଦିନ ମଣି ରୂପରେ ଗୁଣରେ ବଢ଼ିବାକୁ ଲାଗିଲା । ସେ ଯେତିକି ବଢ଼ିଲା ତା'ଠାରେ ସେତିକି ଉତ୍ତମ ଲକ୍ଷଣ ଓ ରାଜକଳା ଫୁଟି ଦେଖାଗଲା । ମଣିକୁ ଯେତେବେଳେ ଆଠ ବରଷ ହେଲା, ରାଜା ତାକୁ ପାଠ ପଢ଼ିବାକୁ ଛାଡ଼ିଲେ । ସେଠାରେ ରାଜପୁଅ ଓ ରାଜାଝିଅମାନେ ପାଠ ପଢ଼ନ୍ତି । ସେ ଚାଟଶାଳୀରେ ଏକ ସୁନ୍ଦରୀ ରାଜାଝିଅ ପଢ଼ୁଥିଲା । ତା ନାଁଟି ହୀରା । ହୀରା ଓ ମଣି ସାଙ୍ଗ ହେଲେ ସେଠି । ଦିନକୁଦିନ ସେମାନଙ୍କ ସ୍ନେହମମତା ଓ ଭାବ ବଢ଼ିଲା । ଦିନ ଦିନ ହୋଇ କେତେ ମାସ ବର୍ଷ କଟିଗଲା । ହୀରା ଓ ମଣି ବଡ଼ ବଡ଼ ହୋଇଗଲେ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ଦୁହିଁଙ୍କ ସ୍ନେହ ଭାବ ବ ବଢ଼ିଲା । ହୀରା ଓ ମଣିର ଏ ସ୍ନେହ ପ୍ରୀତି କଥା ରାଜା

ଶୁଣିବାକୁ ପାଇଲେ । ରାଜା ହୀର ସଙ୍ଗେ କୌଣସି ଭାବ ନ ରଖିବାକୁ ମଣିକୁ ଆଦେଶ ଦେଲେ । ଏ ମଧ୍ୟରେ ହୀରର ପାଠପଢ଼ା ସରିଗଲା । ସେ ତା ଘରକୁ ଚାଲିଗଲା । ତା'ର ଜଣେ କ୍ଷମତାଶାଳୀ ବଡ଼ ରାଜା ସଙ୍ଗେ ବିବାହ ପ୍ରସ୍ତାବ ଉଠିଲା । ସେ ରାଜା କିନ୍ତୁ ବୟସରେ ବୁଢ଼ା, ଏକଆଖିଆ ଓ କୁଜା । ବିବାହର ଆଉ ଅଳପ ଦିନ ରହିଲା । ହୀରର ଏ ପ୍ରକାର ବିବାହ ପ୍ରସ୍ତାବ ମଣି ଶୁଣିପାରିଲା । ଏଥିରେ ସେ ଅତ୍ୟନ୍ତ ଦୁଃଖିତ ହେଲା । ଦିନେ ରାତିରେ ସେ ନଅରରୁ ଲୁଚି ପଳାଇ ଅଇଲା । ଘୋଡ଼ାଶାଳରୁ ଗୋଟିଏ ଉତ୍ତମ ଘୋଡ଼ା ବାଛି ଆଣିଲା । ସେଥିରେ ଚଢ଼ି ହୀରର ବାପାଙ୍କ ରାଇଜକୁ ଗଲା । ମଣି ତାଙ୍କ ସହରରେ ପହଞ୍ଚିଲା । ଠିକ୍ ସେହିଦିନ ବିବାହର ନିର୍ବନ୍ଧ ହେବାର ଥାଏ । ରାଜକୁମାରୀ ହୀର ନଅରରୁ ବାହାରିଲା । ତା ସଙ୍ଗରେ ବହୁତ ଲୋକ ସୁନ୍ଦର ବେଶଭୂଷା ହୋଇ ବାଜାବଜାଇ ଆଲୁଅ ଧରି ଚାଲି ବାହାରିଲେ । ସହରଟି ସୁନ୍ଦର ସାଜସଜ୍ଜା ହୋଇଛି । ରାଜାପୁଅ ଏକ ଗଳିରେ ସହଜେ ଦେଖାପଡ଼ିଲା ଭଳି ଜାଗାରେ ରହିଲେ । ହୀରର ଦଳ ସେହିବାଟେ ଅଇଲେ । ହୀର ମଣିକୁ ସେଠାରେ ଦେଖିପାରିଲା । ଆଶା କଲା, ସେ ବୁଢ଼ାବର କବଳରୁ ନିଶ୍ଚେ ମୁକ୍ତି ପାଇବ । ମଣି ସେ ବିବାହଯାତ୍ରୀ ଦଳ ସଙ୍ଗେ ଚାଲିଲା । ସୁବିଧା ଦେଖି ମଣି ହୀର କାନରେ କ'ଣ ଫୁସ୍‌ଫାସ୍ କରି କହିଦେଲା । କୁଆଡ଼େ ପୁଣି ସେଠୁ ଚାଲିଗଲା । କନ୍ୟା ଯାତ୍ରୀଦଳ ଯାଉ ଯାଉ ଏକ ଛକ ଜାଗାରେ ପହଞ୍ଚିଲେ । ସେଠି ନାନା ପ୍ରକାର ସାଜସଜା ହୋଇଥିଲା । ସେଠି ବାଣ ମରା ହେଲା । ଗାଉଣା ବାଜଣା ଅଧିକରେ କରାଗଲା । ଆହୁରି କେତେ କ'ଣ ବ୍ୟବସ୍ଥା ହେଲା ଲୋକମାନଙ୍କ ମନ ମୋହିବାକୁ । ଯାତ୍ରୀମାନେ ସେଠା ବ୍ୟବସ୍ଥା ଦେଖାଶୁଣାରେ ଏଣେତେଣେ ହେଲେ । ଏ ସମୟରେ

ହୀରା ମାରିଲା ଚମ୍ପଟ । ଯାଇ ମଣି ପାଖେ ହାଜର ହେଲା । ମଣି ଠିକ୍ ତା'ର ନିଜ ପୋଷାକ ପରି ଆଉ ସାଜେ ପୋଷାକ ରଖିଥିଲା । ହୀରାକୁ ତାହା ଚଟାପଟ ପିନ୍ଧେଇଦେଲା । ହୀରାକୁ ଆଉ ନାରୀ ବୋଲି ଚିହ୍ନିବା ସହଜ ନୁହେଁ । ହୀରା ଓ ମଣି ଉଚ୍ଚାରେ ଓ ଚେହେରାରେ ସମାନ ଥିଲେ । ଏବେ ସେ ଦୁହେଁ ଏକା ରୂପ ଓ ଢଙ୍ଗର ପୋଷାକ ପିନ୍ଧିଲେ । ଦୁହେଁଯାକ ଯାଆଁଳା ଭାଇ ପରି ଦେଖାଗଲେ । ଦୁଇଟି



ଘୋଡ଼ାରେ ଚଢ଼ି ଦୁହେଁ ସେଠୁ ଚାଲିଗଲେ । କାଳେ କିଏ ତାଙ୍କ ପିଛା ଧରିବ ଏଇ ଆଶଙ୍କା ଥିଲା । ଦୁହେଁ ଅତି ଜୋରରେ ଘୋଡ଼ାଙ୍କୁ ଛୁଟାଇ ନେଲେ । ଘୋଡ଼ା ଅତି ବେଗରେ ଧାଇଁଲା । ତାଙ୍କ ଖୁରାରୁ ନିଆଁ ବାହାରି ପଡ଼ୁଥାଏ । ବିଲ୍‌କୁଲ୍ ସନ୍ଧ୍ୟା ହୋଇଗଲା । ଆକାଶରେ ଅନେକତା ତାରା ଦେଖାଗଲେ । ସେତେବେଳଯାଏ ଘୋଡ଼ାଙ୍କୁ ଝିପଟାଉଥାନ୍ତି ।

ଦୁହେଁ ତାଙ୍କ ଘରଠାରୁ ଅନେକ ଦୂରକୁ ଚାଲିଗଲେ । ତାଙ୍କୁ ଆଉ କେହି ଧରି ପାରିବାର ଭୟ ରହିଲା ନାହିଁ । ବାଟରେ ଗୋଟିଏ ଛୋଟ କୁଡ଼ିଆଘର ଦେଖିଲେ । ସେଠି ଆଶ୍ରୟ ନେବାକୁ ଇଚ୍ଛା କଲେ । ସେ ଘରେ ଏକ ବୁଢ଼ୀ ଥିଲା । ତାଙ୍କୁ ଘରି ଆଦର କଲା । ପାଖରେ ତା'ର ରଖାଇଲା । ଦୁଇଟି ବଡ଼ ଡକାୟତଙ୍କର ସେ କୁଡ଼ିଆଟି । ସେ ଦୁହେଁ ବୁଢ଼ୀର ସ୍ୱାମୀ ଓ ପୁଅ । ଡାକୁ ଦୁହେଁ ସେତେବେଳଯାଏ ବସାକୁ ଫେରି ନ ଥିଲେ । ଅତିଶୟ ବାଧାରୁ ହୀରକୁ ଘୁମ ଲାଗିଲା । ସେ ଶୋଇବାକୁ ଗଲା । ତା'ର ଶୀଘ୍ର ନିଦ ଆସିବାକୁ ବୁଢ଼ୀ ତା ଚାକରାଣୀକୁ ତା ଗୋଡ଼ ଘଷିଦେବାକୁ ବରାଦ କଲା । ହୀରକୁ ଘୁଙ୍ଗୁଳିନିଦ ମାଡ଼ ଆସୁଛି, ଏହି ସମୟରେ ଚାକରାଣୀର ଲୁହ ଟୋପେ ଦି'ଟୋପା ତା ଗୋଡ଼ରେ ପଡ଼ିଗଲା । ହୀରର ନିଦ ଚହଲିକନା ଭାଙ୍ଗିଗଲା । ସେ ଉଠିଲା, ଦେଖିଲା ସେ ଚାକରାଣୀଟି କାନ୍ଦୁଛି । ତା'ର କାନ୍ଦର କାରଣ କ'ଣ ପଚାରିଲା । ସେ ଅଧିକ କାନ୍ଦିବାକୁ ଲାଗିଲା । ବହୁ ବୁଝାଶୁଝାରେ ଥୟ ହେଲା । ଆଉ କାନ୍ଦିଲା ନାହିଁ । ହୀରକୁ ଚୁନି ଚୁନି ତା କାନରେ କହିଲା, "ଏ ଘରଟା ଦୁଇଜଣ ବଡ଼ ଡାକୁଙ୍କର । ସେମାନେ ଫେରିଲେ ତୁମ ଦୁହିଁଙ୍କର ଜୀବନ ରଖିବେ ନାହିଁ ।" ଆଉ କି ହୀରକୁ ନିଦ ଲାଗେ ? ସେ ବିଛଣାରୁ ଉଠି ପଡ଼ିଲା । ମଣିକୁ ସବୁକଥା ଜଣାଇଦେଲା । ସଙ୍ଗେ ସଙ୍ଗେ ଦୁହେଁଯାକ ସେଠାରୁ ପଳାଇଯିବାକୁ ବାହାରିଲେ । ସେ କଅଁଳକନ୍ୟା ଅବିଶ୍ୱାସୀ ବୁଢ଼ୀ ତାଙ୍କୁ ରଖାଇବାକୁ କେତେ ବାଁରେଇଲା । କହିଲା, "ରାତି ହୋଇଗଲାଣି । ଅନ୍ଧାରଟା । ବାଟଘାଟ ଭଲ ନୁହେଁ । ଜୀବଜନ୍ତୁର ଭୟ ଅଛି । ବାଟରେ ଚୋରଖଣ୍ଡଙ୍କ ହାବୁଡ଼େ ପଡ଼ିପାର । ଧାଇଁ ଧାଇଁ ଆସିଛ । ଥକା ମାରି ନାହଁ । ମୋ ବାପ, ରାତିକ ରହିଯାଅ । ଭୋରରୁ ଉଠି ପଳାଇବ ଇତ୍ୟାଦି ।"

ସେମାନେ କ ଆଉ ତା କଥା ଶୁଣନ୍ତି ? ପୁଣି ଘୋଡ଼ାରେ ଚଢ଼ି ଦୁହେଁ ବାହାରିଲେ । ସେ ଗଲେ ଆଉ ଫେରିବେ ନାହିଁ ଏହା ବୁଢ଼ୀ ଜାଣିଲା । "ହ'ଟା ବଡ଼ ଚଢ଼େଇ ଉଡ଼ିଗଲେ । ଯୋଡ଼େ ଚଢ଼େଇ ଉଡ଼ିଗଲେ" ବୋଲି କହି ବୁଢ଼ୀ ଡାକ ପକାଇଲା । ସେତେବେଳେ ତାକୁ ଦୁହେଁ ଫେରୁଥିଲେ । ବୁଢ଼ୀର ଠାରୁ ବୁଝିପାରି ସେ ବାପ ପୁଅ ଦୁହେଁ ମଣି ଓ ହୀରକୁ ଗୋଡ଼ାଇଲେ । ତାଙ୍କୁ କେହି ଗୋଡ଼ାଉ-ଥିବା ଦେଖି ମଣି ମାରିଲା ଏକ ଶର । ସେ ଶରଟା ପୁଅଠି ବାଜିଲା । ସେ ମରିଗଲା । ବାପ, ପୁଅ ମରଣ ଦେଖି ଆଉ ଗୋଡ଼ାଇଲା ନାହିଁ । ଘରକୁ ଫେରି ଆଇଲା । ହୀର ଓ ମଣିକୁ ନିଶ୍ଚେ ସାରି କରିବ ମନରେ ଏହା ଥୟ କଲା । ଅନେକ ଦୂର ଗଲାପରେ ହୀର ଓ ମଣି ଏକ ଧର୍ମଶାଳାରେ ରାତକ କଟାଇଲେ ।

ରାତି ପାହିଲା । ସକାଳ ହେଲା । ଦୁହେଁ ବିଛଣାରୁ ଉଠିଲେ । ଦେଖିଲେ ଧର୍ମଶାଳା ଆଗରେ ଗୋଟିଏ ବୁଢ଼ା ବସିଛି । ସେ ଘୋଡ଼ା ସଇଶ କାମ କରିବାକୁ ଯାଚି ହେଲା । ମଣି ତାକୁ ସଇଶ କାମରେ ରଖାଇଲା । ବେଳ ଘଡ଼ିଏ ହ'ଘଡ଼ି ହୋଇଗଲା । ସେମାନେ ପୁଣି ଚାଲିଲେ । ସଇଶ ତାଙ୍କ ପଛେ ପଛେ ଗଲା । ସେମାନେ ଏକ ନିଛାଟିଆ ଥାନରେ ପହଞ୍ଚିଲେ । ସଇଶ ମଣିକୁ ଖୁବ୍ ଜୋରରେ ଚୋଟେ ପକାଇଲା । ତା ମୁଣ୍ଡ ବେକରୁ ଅଲଗା ହୋଇଗଲା । ତା'ପରେ ହୀରକୁ ମାରିବାକୁ ବାହାରିଲା । ହୀର ତା ଗୋଡ଼ତଳେ ପଡ଼ିଗଲା । ବହୁତ କାକୁତିମିନତି କଲା । କହିଲା ସେ ସେ ପୁରୁଷ ନୁହେଁ । ନାରୀ ସେ । ସେ ଅବଳା । ପୁରୁଷ ପୋଷାକ ପିନ୍ଧିଛି ମାତ୍ର । ମଣିକୁ ବିଭା ହେବାକୁ ତା ସଙ୍ଗେ ଯାଉଥିଲା । ତା'ର ଜୀବନ ରକ୍ଷା ହେଲେ ସେ ସଇଶକୁ ବିଭା ହେବ । ଶପଥ କଲା । ହୀରର ବଚନରେ ସଇଶର ନିଷ୍ଠୁର ହୃଦୟ ତରଳିଲା । ସେ ସଇଶ

ଦେଉଛୁ, ମଣି ମାରିଥିବା ଡାକୁର ବାପା । ଡାକୁ ସରଦାର । ସେ ହୀରକୁ ନେଇ ତା କୁଡ଼ିଆକୁ ଫେରିଲା । ଖଣ୍ଡେ ବାଟ ଫେରି ଆଇଲେଣି । ହୀର ଆକାଶକୁ ଅନାଇ ଠୋ ଠୋ ହସିଲା । ଏଥିରେ ଡାକୁ ବୁଢ଼ା ଚିଡ଼ି ଉଠିଲା । ରାଗରେ କହିଲା, "କେତେ ଦିନେ ହେଁ ଦେଖୁଛୁ । ଦାନ୍ତ ନେଫେଡୁଛୁ କେତେ ? କାହିଁକି ଏତେ ହସୁଛୁ ?" ହୀର ଆକାଶକୁ ହାତ ବଢ଼ାଇ କହିଲା, "ଦେଖ ଦେଖ କେଡ଼େ ସୁନ୍ଦର ଚାଲିଛି ଏ ।" ତା କଥାରେ ଡାକୁ ବୁଢ଼ା ଆକାଶକୁ ଚାହିଁଲା । ହୀର ଆଖିପିଛୁଳାକେ ତରବାରୀ କାଢ଼ି ବୁଢ଼ାକୁ ଗୋଟେ ଦେଲା । ସେଥିକରେ ବୁଢ଼ାର ଦଫା ଶେଷ ହେଲା । ହୀର ମଣି ମରି ପଡ଼ିଥିବା ଥାନକୁ ଫେରିଗଲା । ମଣିପାଖେ ବସି ଅତି ବିକଳରେ କାନ୍ଦିଲା । ତା କାନ୍ଦଣା ଶୁଣି ବାଟୋଇମାନେ ତାକୁ ବଡ଼ ବିକଳ ପାଇଲେ । ଯୋଗକୁ ଈଶ୍ୱର ପାର୍ବତୀ ସେ ବାଟେ ଯାଉଥିଲେ । ପାର୍ବତୀ ଦେଖି ତା କାନ୍ଦଣାକୁ ଭାରି ବିକଳ ପାଇଲେ । ତା କାନ୍ଦଣାର କାରଣ ସେ ଈଶ୍ୱରଙ୍କୁ ପଚାରିଲେ । ଈଶ୍ୱର କହିଲେ, "ଦେବି ! ତୁମେ ମାଇପି କାନ୍ଦଣାର କାରଣ ପଚାର ନାହିଁ । ମଣିଷ ଜାତିଙ୍କରତ ଅନେକ ଦୁଃଖ । ତାଙ୍କ ଦୁଃଖ ଶୁଣିଲେ ରହିପାରିବ ନାହିଁ । ତେଣୁ କାରଣ ନ ପଚାରିବା ଭଲ ।" ଦେବୀ ହୀରର ଦୁଃଖରେ କାଠ ପାଲଟିଗଲେ । ଆଗକୁ ଆଉ ପାଦ କାଢ଼ି ପାରିଲେ ନାହିଁ । ହୀରର ଦୁଃଖ ଜାଣିବାକୁ ଜିଦ୍ କଲେ । ତା ଦୁଃଖ ଦୂର କରିବାକୁ ଈଶ୍ୱରଙ୍କୁ ମିନତି କଲେ । ଶିବ ବାଧ୍ୟରେ ମଣିର ମରଣ କଥା କହିଲେ । ମଣି ନିକଟକୁ ନିଜେ ଗଲେ । ତା ମୁଣ୍ଡକୁ ତା ଗଣ୍ଡି ସହ ଯୋଡ଼ିଦେଲେ । ତା ଉପରେ ଅମୃତ ଛିଞ୍ଚିଦେଲେ । ମଣି ଜୀଇଁ ଉଠିଲା । ହୀର ଆନନ୍ଦରେ ତାଙ୍କ ଗୋଡ଼ତଳେ କେତେ ମୁଣ୍ଡିଆ ମାରିଲା । କିନ୍ତୁ ଭୂଇଁରୁ ଉଠି ଦେଖିଲାବେଳକୁ ଈଶ୍ୱର ପାର୍ବତୀ ଉଭେଇ ଗଲେଣି ।

ଦୁହେଁଯାକ ପୁଣି ଘୋଡ଼ାରେ ଚଢ଼ି ବାହାରିଲେ । ଅନେକ ବନ ପରେ ଏକ ସହରରେ ପହଞ୍ଚିଲେ । ସେଠି ଗୋଟିଏ ଧର୍ମଶାଳାରେ ବସା କରି ରହିଲେ । ହୀରା ବସାରେ ରହିଲା । ମଣି ସଉଦା କିଣିବାକୁ ଗଲା । ଦୋକାନରୁ ସଉଦା କିଣିଲା । ପଇସା ଦେଇ-ଦେଲା । ସଉଦା ଦୋକାନରେ ଛାଡ଼ିଗଲା । ପରେ ଆସି ନେଇଯିବ କହିଲା । କେତେକ ଦୋକାନରେ ସଉଦା ପାଇଁ ବାହାନା ଦେଇଗଲା । କେତେକ ଦୋକାନରୁ ସଉଦା କିଣି ଛାଡ଼ିଗଲା । ଦୋକାନ ପରେ ଦୋକାନ ଏହିପରି କରିଗଲା । ବଜାର ଶେଷରେ ଗୋଟିଏ ପାନ ଦୋକାନ ଥିଲା । ସେ ଦୋକାନର ମାଲିକ ଗୋଟିଏ ମାଳିଆଣୀ । ସେ ଅନେକ ମନ୍ତ୍ର ଯନ୍ତ୍ର ଜାଣେ । ମଣି ତାକୁ କିଛି ପାନ ଦେବାକୁ କହିଲା । ମାଳିଆଣୀ ତାକୁ ବହୁତ ଆଦର କଲା । ଦୋକାନ ଭିତରକୁ ଡାକିଲା । ମଣି ତା ଦୋକାନକୁ ଗଲା । ସେ ମଣିକୁ ମନ୍ତ୍ରବଳରେ ଛେଳି କରିଦେଲା ।

ତେଣେ ହୀରା ମଣିକୁ ଅନାଇ ବସିଛି । ବେଳୁବେଳ ଡେରି ଅଧିକ ହେଲା । ହୀରା ମଣିକୁ ବଜାରକୁ ଖୋଜି ଚାଲିଲା । ସେ ତା'ର ପୁରୁଷ ପୋଷାକ ଖୋଲିନ ଥିଲା । ସେ ବଜାରକୁ ଗଲାମାତ୍ରେ ଦୋକାନୀଏ ସଉଦା ନେଇଯିବାକୁ କହିଲେ । ଦୋକାନୀମାନଙ୍କର ଧାରଣା ସେ ମଣି । ସଉଦା କିଣି ଯାଇଥିଲା । ଫେରି ଆସିଲେ ନେବ ସମସ୍ତଙ୍କୁ କହିଲା । ବଜାର ମୁଣ୍ଡ ପାନ ଦୋକାନୀ କିଛି ଯାଚିଲା ନାହିଁ । ହୀରା ଜାଣିଲା ଏଇଠି ମଣି ଅଟକିଛି । ସେ ଦୋକାନରେ କିଛି ପାନ ମାଗିଲା । ସେ ମାଳିଆଣୀ ତାକୁ ବହୁତ ଆଦର ଗୌରବ କଲା । ଦୋକାନ ଭିତରକୁ ଯିବାକୁ କହିଲା । ହୀରା କହିଲା, "ମୁଁ କ'ଣ ତାଙ୍କପରି ବୋକା ହୋଇଛି ଯେ ଦୋକାନ ଭିତରକୁ ଯିବି ।" ସେଠାକୁ ଗଲାନି । ଅନ୍ୟ ବଜାରକୁ ଗଲା । ଠାଏ ଦେଖିଲା ଯେ ଏକ

ବୁଢ଼ୀ ଖଜା ମିଠେଇ ତିଆରି କରୁଛି । ହକଲରେ ହ କାନ୍ଦ ଲଗିଛି । ହୀରା ତା ପାଖକୁ ଯାଇ ପଚାରିଲା, "ମା, ଖଜା ମିଠେଇ ତ କରୁଛ, କାନ୍ଦୁଛ କାହିଁକି ? ବୁଢ଼ୀ କହିଲା, "କ'ଣ କହିବରେ ବାପା, ମୋ ଦୁଃଖ କହିଲେ ନ ସରେ । ଆମ ରାଜାଙ୍କର ଗୋଟିଏ ଝିଅ ଅଛି । ସେ ଯା ହାତ ଧରୁଛି, ସେ ମରୁଛି । ତାକୁ ଜଣେ ଲେଖାଏଁ ନିତି ବାହା ହେଉଛନ୍ତି । ମୋ ପୁଅର ଆଜି ପାଳି ପଡ଼ିଛି । ସେ ବାହା-ହେବାକୁ ଯିବ । ସେଇଥିପାଇଁ ଖଜା ତିଆରି କରୁଛି । କାନ୍ଦିବା କଥା ତ ଏଇଆରେ ବାପ ।" "ମା, ତୁମେ କାନ୍ଦ ନାହିଁ । ତୁନି ହୁଅ, ଥୟ ଧର । ତୁମ ପୁଅ ବଦଳରେ ମୁଁ ଯିବି । ସେ ଅଲକ୍ଷଣୀକୁ ବାହା ହେବି । ଦେଲୁ ସେ ମିଠେଇରୁ ମୁଁ ପେଟେ ଖା'ଏ ।" ବୁଢ଼ୀ ତା ପୁଅ ବଦଳରେ ଜଣକୁ ମାଗଣା ପାଇଲା । ତା ମନ ଭାରି ଖୁସି ହେଲା । ହୀରାକୁ ଖଜା ଖାଇବାକୁ ଦେଲା । ସେ ପେଟେ ଖାଇଲା । ନଅରଆଡ଼େ ଗଲା । ରାଜାଙ୍କ ଲୋକମାନେ ହୀରାକୁ ରାଜାଝିଅ ପାଖକୁ ନେଇଗଲେ । ସେ ପୁ ରୁଷ ପୋଷାକ ପିନ୍ଧିଥିଲା । ରାଜାଝିଅ ଅନ୍ୟ ଯୁବକଙ୍କୁ ଯେପରି ଆଦର କରୁଥିଲା, ହୀରାକୁ ସେପରି କଲା । ହୀରାକୁ ଖାଇବାକୁ ଦିଆଗଲା । ପୁରୋହିତ ଆଇଲେ । ଦୁଇ ରାଜାଝିଅଙ୍କର ହାତଗଣ୍ଠି ପକାଇଲେ । ଦୁହେଁ ତାଙ୍କ ଶୋଇବା ଘରକୁ ଗଲେ । ରାଜାଝିଅଟି ଅତି ଧୀର ଓ ନମ୍ରା । ସେ ଶୋଇବାଘରେ ପହଞ୍ଚିଲା-କ୍ଷଣି ବଡ଼ ଉଗ୍ରରୂପ ଧାରଣ କଲା । ତା ମୁଣ୍ଡରୁ ବେଣୀ ଫିଟିଗଲା । ଜଳନ୍ତା କୋଇଲା ପରି ଆଖି ଦୁଇଟା ତା'ର ଜଳି ଉଠିଲା । ଭୂଇଁରେ ଗଡ଼ିଲା । ନାନା କୁକଥା ଅକଥା କହିଲା ! ପାଟିତୁଣ୍ଡରେ ଘର ଚମକାଇଲା । ଏହିପରି ବହୁ ସମୟ ହେଲା । ତା'ପରେ ତା'ର ଚେତା ହଜିଗଲା । ଅଚେତା ହୋଇ ଖଟ୍‌ଗୁଡ଼ ତଳେ ପଡ଼ିଗଲା । ତା ବାଁ ଜଙ୍ଘରୁ ଗୋଟେ କଳା ନାଗସାପ ବାହାରିଲା । ଫାଇଁ ଫାଇଁ

ଗର୍ଜନ କଲା । ହୀରା ଆଡ଼କୁ ମୁହାଁଇଲା । ସାପର ବିରାଟ ଫଣା ଓ ଲହ ଲହ ଜିଭ ଦେଖିଲେ ଯେ କୌଣସି ଲୋକ ଭୟ କରିବ । ତାକୁ ଦେଖି ହୀରାର ଛାତିରେ ଛନକା ପଶିଲା । କିନ୍ତୁ ତେବେ ଦମ୍ଭ ଓ ଧୈର୍ଯ୍ୟ ଧରିଲା ପରିସ୍ଥିତି ସମ୍ଭାଳ ନେବାକୁ । ସାପଟା ତାକୁ କାମୁଡ଼ିବାକୁ ଧାଇଁଲା । ସେ ବଡ଼ ଚତୁରତାରେ ତରବାରି ବାହାର କରି ସାପକୁ ଦ'ଗଡ଼ କରିଦେଲା । ଅଚେତା ହୋଇ ପଡ଼ିଥିବା ରାଜାଝିଅର ସେବାରେ ଲାଗିଲା । ତା ପିଛାରେ ଲାଗି ଲାଗି ତାକୁ ଚେତା କଲା । ସେ ସୁସ୍ଥ ବୋଧ କଲା । ସକାଳ ହେଲା । ସହର-ତମାମ ହୁରି ପଡ଼ିଗଲା ଯେ, ରାଜାଝିଅକୁ ଅକ୍ତିଆର କରିଥିବା ସାପ କାଲି ରାତିରେ ମରିଛି । ତାକୁ ହୀରାନାମକ ଯୁବକ ମାରି ପାରିଛି । ରାଜାଙ୍କର ଆନନ୍ଦର ସୀମା ନାହିଁ । ସେ ହୀରାକୁ ଡକାଇ ନେଲେ । ତାଙ୍କଠାରୁ ଏକ ବର ନେବାକୁ କହିଲେ । ହୀରା କହିଲା, "ମୋତେ ଯଦି ବର ଦେବାକୁ ଇଚ୍ଛା କରନ୍ତି, ତେବେ ଆପଣଙ୍କ ରାଜ୍ୟ ଓ ରାଜସିଂହାସନ ମୋତେ ଅଧଘଣ୍ଟାକ ପାଇଁ ଛାଡ଼ି ଦିଅନ୍ତୁ । ମୁଁ ଶାସନ କରିବି ।" ରାଜା ଏଥିରେ ରାଜି ହେଲେ । ହୀରାକୁ ରାଜମୁକୁଟ ପିନ୍ଧାଇ ରାଜସିଂହାସନରେ ବସାଇଦେଲେ । ପାତ୍ରମନ୍ତ୍ରୀ ସମସ୍ତଙ୍କୁ ତା'ର ହୁକୁମ ପାଳିବାକୁ ଜାରି କଲେ ।

ହୀରା ରାଜଗାଦିରେ ବସିଲା । ସହରରେ ଡିଙ୍ଗୁରା ଦେବାକୁ ଆଦେଶ ଦେଲା ଯେ ସମସ୍ତ ସହରବାସୀ, କି ପିଲା କି ବୁଢ଼ା, କି ସ୍ତ୍ରୀ, କି ପୁରୁଷ ସମସ୍ତେ ଆସି ରାଜାଙ୍କୁ ସାକ୍ଷାତ କରନ୍ତୁ । ସାକ୍ଷାତ ପାଇଁ ଆସିଲାବେଳେ ସଙ୍ଗରେ ତାଙ୍କର ଗାଈଗୋରୁ, ଛେଳିମେଣ୍ଢା, ପଶୁ-ପକ୍ଷୀ ସମସ୍ତେ ଆଣିବେ । ଡିଙ୍ଗୁରା ବାଜିଲା । ସହର ଲୋକେ ସେଇଲାଗେ ନଅରକୁ ଆସିଲେ । ତାଙ୍କ ପୋଷା ଜୀବଜନ୍ତୁ ପଶୁପକ୍ଷୀ ସଙ୍ଗରେ ଆଣିଲେ । ସମସ୍ତେ ରାଜାଙ୍କ ପାଖରେ ଠୁଳ ହେଲେ ।

ସହରବାସୀଙ୍କ ନାମ ତାଲିକା ଧରାଗଲା । ଦେଖାଗଲା ଯେ ସମସ୍ତ ସହରବାସୀ ଆସିଛନ୍ତି । ଆସି ନାହାଁନ୍ତି କେବଳ ସେ ପାନବିକାଳୀ ମାଳିଆଣୀ । ରାଜାଙ୍କ ଲୋକ ଗଲେ, ତାକୁ ତା ଛେଳିସହ ଧରି ଆଣିଲେ । ଶିବି ଆଗରେ ତାକୁ ହାଜର କଲେ । ଛେଳିଟି ଶିବିକୁ ଦେଖିଲାମାତ୍ରେ ତା ନିକଟକୁ ଦୌଡ଼ି ଆସିଲା । ଆନନ୍ଦରେ ଡେଇଁଲା ।



ଲାଞ୍ଜ ହଲାଇ ହଲାଇ ତା ଚାରିପଟେ ବୁଲିଲା । ଶିବି ଜାଣିଲେ ଯେ ସେ ନିଧାର୍ଯ୍ୟ ମଣି । ଶିବି ମାଳିଆଣୀଠାରୁ ଛେଳି କିଣିବାକୁ ଚାହିଁଲେ । ସେ ତାହା ବିକିବାକୁ ମନାକରି କହିଲା, "ହଜୁର, କ୍ଷମା କରନ୍ତୁ । ସେ ଛେଳିଟିକୁ କାଳୀଙ୍କଠାରେ ବଳି ଦେବାକୁ ମୁଁ ମାନସିକ କରିଛି । ଆସନ୍ତା ପୂନିଅଁ ଦିନ ବଳି ପଡ଼ିବ । ଏ ଧର୍ମକାର୍ଯ୍ୟରେ ବାଧା ଦିଅନ୍ତୁ ନାହିଁ ହଜୁର ।" ଏହା ଶୁଣିଲାମାତ୍ରେ ଶିବି ତାକୁ ବନ୍ଦୀ କରିବାକୁ ଆଦେଶ ଦେଲେ । ଅଳପ କାଳରେ ତାକୁ ପୋଡ଼ି ମାରିଦେବାକୁ ମଧ୍ୟ

ହୁକୁମ ଦେଲା । ହୀରାର ହୁକୁମ ସଙ୍ଗେ ସଙ୍ଗେ ପାଳନ ହେଲା । ହୀରା ଧୂଳି ମନ୍ତ୍ରର ଛେଳି ଉପରେ ପକାଇଦେଲା । ଛେଳି ସେଇନେ ଉଭେଇଯାଇ ମଣିଷ ପାଲଟିଗଲା । ହୀରା ତା'ର ପୁରୁଷ ବେଶ ଛାଡ଼ି ଦେଲା । ନାରୀବେଶ ଧରିଲା । ମଣି ତା'ର ସ୍ୱାମୀ ବୋଲି ସମବେତ ଜନତାକୁ ଜଣାଇଦେଲା । ତା ପରେ ନଅରର ଅନ୍ଦର ମହଲକୁ ଗଲା ।

ସେଠା ରାଜାଝିଅ, ହୀରା ପୁରୁଷ ନୁହେଁ ଜାଣିଲା । ଏଥିରେ ସେ ବଡ଼ ମର୍ମାହତ ହେଲା । ତା'ର ଦୁଃଖ ଦୂର କରାଗଲା । ସେ ମଣିକୁ ବିବାହ କଲା । ମଣି ସେଠାରେ ରାଜା ହେଲା । ତା'ର ଦୁଇ ସ୍ତ୍ରୀଙ୍କୁ ଧରି ସୁଖରେ ରାଜ୍ୟ ପାଳିଲା ।

ଦିନେ ସେଠା ରାଜାଝିଅ ହୀରାକୁ ପଚାରିଲା, "ଭଉଣି ! ମଣି କି ଜାତିରେ ଜନ୍ମ ? ମୁଁ ଶୁଣୁଛି ସେ ରାଜାଙ୍କର ନିଜ ପୁଅ ନୁହେଁ । ରାଜାଙ୍କର ପାଳିତ ପୁତ୍ର । ତା ଭିତରେ ଆହୁରି ଅନେକ ରହସ୍ୟ ଅଛି । ତୁମକୁ ସେ ଭଲ ପାଆନ୍ତି । ତୁମେ ତାଙ୍କୁ ତାଙ୍କ ଜାତିକୁଳ କଥା ପଚାର ।" ହୀରା କହିଲା, "ତାଙ୍କ ଜାତିକଥା ଜାଣି ଆମର କି ଲାଭ ? ତୋତେ ସେ ଭଲ ପାଉ ନାହାନ୍ତି କି ? ତୋର ସେ କ'ଣ ଊଣା କଲେ କି ? ତୋ ପ୍ରତି ତାଙ୍କର ଅନାଦର ତ ମୁଁ କେବେ ଦେଖି ନାହିଁ । ତୋର କ'ଣ ଊଣା କଲେ ମନ ଖୋଲି କହ ।"
ରାଜାଝିଅକୁ ଯେତେ ବୁଝାଇଲେ ବୁଝିଲା । ନାହିଁ ଏକଜିଦ୍ କରି ରହିଲା । ମଣିକୁ ତା'ର ଜାତିକଥା ପଚାରି ନୋହିଲେ ହେବ ନାହିଁ । ହୀରା ତାହା କରିବାକୁ ସତ୍ୟ କଲା । ଦିନେ ହୀରା ମଣିକୁ ତା'ର ଜାତି କଥା ପଚାରିଲା । ମଣି ଏଥିରେ ବଡ଼ ବ୍ୟଥା ପାଇଲା । ହୀରାକୁ କହିଲା, "ତୁ ଏହା ପଚାରି ମୋତେ ଦୁଃଖ ଦେନା କିମ୍ବା ନିଜେ ବିପଦ ବରଣ କରନା ।" ଯେତେ ମନା କଲେବି ହୀରା ତା ପ୍ରଶ୍ନରୁ ଓହରିଲା ନାହିଁ । ଏକଜିଦ୍ କରି ପ୍ରଶ୍ନ କଲା । ଶେଷରେ ମଣି କହିଲା,

"ଯଦି ତୁ ତୋ ପ୍ରଶ୍ନର ଉତ୍ତର ଜାଣିବାକୁ ଚାହୁଁ, ତେବେ ମୋ ସଙ୍ଗେ ନଦୀକୂଳକୁ ଆ ।" ଦୁହେଁ ସାଙ୍ଗ ହୋଇ ଏକ ଗଭୀରନଈ କୂଳକୁ ଗଲେ । ମଣି ଆଣ୍ଠୁଏ ପାଣିକୁ ଯାଇ ପଚାରିଲା, "ହୀରା, ତୁ ମୋତେ ଚାହୁଁ କି ମୋ ଜାତି ଚାହୁଁ ?" ହୀରା ଜାତି ଚାହେଁ କହିଲା । ମଣି ଅଣ୍ଟାଏ ପାଣିକୁ ଗଲା । ପଚାରିଲା, "ମୋ ଜାତି ପଚାରିବୁ ଆଉ ?" ସେ ପୁଣି ହଁ କଲା । ମଣି ବେକେ ପାଣିକୁ ଚାଲିଗଲା । କହିଲା, "ହୀରା, ତୋତେ ବହୁତ ମିନତି ହୋଇ କହୁଛି ମୋ ଜାତିକଥା ପଚାର ନାହିଁ । ପୁଣି ପଚାରିବୁ କି ?" ହୀରା ପୁଣି ହଁ ଭରିଲା । ମଣି ମୁଣ୍ଡେ ପାଣିକୁ ଗଲା । କହିଲା, "ହୀରା, ଏବେବି ସମୟ ଅଛି । ତୋ ପଚାରିବା ଅଝଟ ଛାଡ଼ । ମୋ କଥା ରଖିବୁ ନା ପଚାରିବୁ ?" ଫେରି ସେ 'ହଁ' ଭରିଲା । ମଣି ଅଧିକ ପାଣିକୁ ଗଲା । କେବଳ ତା'ର ବାଳ ଦେଖାଯାଉଥାଏ । ମଣି ପାଣିରେ ଗର୍ଜନ କରି କହିଲା, "ହୀରା, ମୋ କଥା ସରିଲା । ମୋ ଜୀବନ ଦୀପ ଲିଭିଲା । ଶେଷଥର ପାଇଁ ପୁଣି ପଚାରୁଛି, 'ଜାତି' କଥା ପଚାରିବୁ ? ମଣି ଅନ୍ୟ ପୁରରୁ କଥା କହିଲା ପରି ଶୁଭୁଥାଏ । ହୀରା ତା'ର ଝାଣ ଛାଡ଼ିଲା ନାହିଁ । "ହଁ ହଁ ନିଶ୍ଚୟ" ହୀରା କହିଲା । ହୀରା ପାଟିରୁ କଥା ନ ସରୁଣୁ ମଣି ପାଣିରେ ବୁଡ଼ିଗଲା । ଆଉ ତା'ର ପତ୍ତା କିଛି ଦେଖାଗଲା ନାହିଁ । କିନ୍ତୁ ସେଇଠି ଗୋଟେ କଳା ସାପ ଦେଖାଗଲା । କିଛି ସମୟ ପରେ ସାପ ବି କୁଆଡ଼େ ଉଭେଇଗଲା । ହୀରା କାଠ ପରି ସେଇଠି ବସି ରହିଲା । ତାକୁ ମଣି ଛାଡ଼ିଯିବ ଏ ବିଶ୍ୱାସ ନ ଥିଲା ତା'ର । ମଣି କୁଆଡ଼େ ଚାଲିଗଲା । ଆଉ ଫେରିଲା ନାହିଁ । ହୀରାର ବହୁ ସମୟ ପରେ ଚେତା ହେଲା । ନିଜର ଭୁଲ୍ ବୁଝିଲା । ବୁଝିଲେବା କ'ଣ ହେବ । ନେଡ଼ିଗୁଡ଼ କହୁଣିକୁ ବୋହି ଯାଇଥିଲା । ବହୁତ ଚିନ୍ତା ଓ ଅନୁତାପରେ ତା ଶେଷକାଳ କଟାଇଲା ।